୧ମ ବ୍ୟକ୍ତି—ହଁ—ସେ ତ

୨ୟ ବ୍ୟକ୍ତି—ହଁ—ଅଣେଇଲେ । ସେ ଏବେ ବନ୍ଦ ହବାକୁ ଲାଗିଲ

୧ମ ବ୍ୟକ୍ତି—ନାହିଁକି ? କଣ କହୁଛନ୍ତି ?

୨ୟ ବ୍ୟକ୍ତି—ସେ କହନ୍ତି ତାଙ୍କର ଜୁଆଡ଼େ ଗୋଟିଏ ଜଙ୍ଗଲ ଅଛି, ସାଙ୍ଗହୋଇ ଦୁହେଁ ଶିକାର କରିବାକୁ ଆସିଥିଲେ, ସେଇଠି ଦୁହେଁ ବଣାହେଲେ, ଅଳ୍ପ ତ ଏମାନେ ଧରିଅଛିଲେ, ସେ ସେଇଠି ଜୁଆଡ଼େ ଗଲେ; ରଜା ତାଙ୍କୁ ଖୋଜି ନ ଆଣିଲେ ସେ ବାହା ହେବେ ନାହିଁ କି ରାଜ୍ୟ ଭୋଗ କରିବେ ନାହିଁ ।

୧ମ ବ୍ୟକ୍ତି—ତୁମେ ଜୁଆଡ଼େ ଯାଇଥିଲ ? ତମ ବନ୍ଧୁ କଣ କରୁ ହିଁଗୁର ହଜିଚି ?

୨ୟ ବ୍ୟକ୍ତି—ଆରେ ଯାଃ ଆମ ବନ୍ଧୁ ଗୋଟା କଣ ହବ । ମହାରଜା ହୁକୁମ ଦେଇଛନ୍ତି ଯେ ଆଗେ ତାଙ୍କ ସନ୍ଧାନ ଆଣିଦେବ ତା ମୁଣ୍ଡରେ ପାଟସ୍ଥିରିଯା ବନ୍ଧାହବ । ବହୁତ ଲୋକ ବହୁତ ଆଡ଼େ ଯାଇଛନ୍ତି । ହାଗ ଘୋଡ଼ା ନେଇ ସବୁ ବୁଲୁଛନ୍ତି । କେହିତ କାହିଁ ଏ ପର୍ଯ୍ୟନ୍ତ ସନ୍ଧାନ ପାଇ ନାହାନ୍ତି । ମୁଁ ମନା କରୁଚ ଏ ଥୋଡ଼ାଏ ମଜେ ଭଡ଼କର—

୧ମ ବ୍ୟକ୍ତି—ହଉ ହଉ ଏଇଥିଣ୍ଡି ଅସ ପଛେ କଥାବାର୍ତ୍ତା ହବା ।

୨ୟ ବ୍ୟକ୍ତି—ହଉ ଚଲ ।

(ଉଭୟଙ୍କର ପ୍ରସ୍ଥାନ)

(ରତ୍ନମାଳୀର ପ୍ରବେଶ)

ଗୀତ ।

କଳେଲ ସ୍ୱର—ତାଳ ଝୁସ ।

କର୍ମ୍ମା ନର ମନ ଥରେ ଥରେ ତମଭ ଥରେ
ଭଲ ମନ୍ଦ କଛୁ ନ ପଡ଼େ ଆଗନ୍ତୁ ନୟନ ପଥରେ । ଘୋଷା ।
କର୍ମ୍ମା ବୁଲି ବୁଲି ଦେଖଇ ସେ ମନୋରଥରେ ।
ବରଷୁ କୁସୁମ ଅବା ଅଶନି ଭାର ମାଥରେ । ୧ ।
(କର୍ମ୍ମା) ଆଣି ନାହାଁକୁ ବସାଇ ଦିଅଇ ଭୀଷଣ ସାଗରେ
ଅବା ବୁଡ଼ିବ କି ପଡ଼େ କୂଳରେ ଲାଗିବ ନ ଜାଣି ଆଗରେ । ୨
କର୍ମ୍ମା ଆଣି ଲତା ଛାଣିଆଣି ପୀରତିକି ପକାଏ ଛନ୍ଦରେ,
କର୍ମ୍ମା ଦମ୍ପୀ ଦମ୍ପୀନ ପଡ଼ନ୍ତି ବିଷମ ଫାନ୍ଦରେ । ୩ ।

(ରତ୍ନମାଳୀର ପ୍ରବେଶ)

ରତ୍ନ—(ସ୍ୱଗତ)

ଜନମରୁ ଅଭାଗୀ ମୁଁ,
ଅଭାଗୀ ମୁ ବଡ଼ କର୍ମ୍ମହୀନା,
କର୍ମ୍ମହୀନା, ବଡ଼ ଅଲକ୍ଷଣା,
ଅଭାଗୀ ଲକ୍ଷଣ ଦେଖେ ପିତାଙ୍କ ଦୁର୍ଦ୍ଦଶା,
ଦୁର୍ଦ୍ଦଶାରେ ହେଲେ ରାଜ୍ୟଭ୍ରଷ୍ଟ,
ରାଜ୍ୟଭ୍ରଷ୍ଟ ଖାଲି ନୋହେ ଜୀବନେ ନହତ,
ଶୈଶବରେ ମନ୍ଦଭାଗୀ ମାତୃ ପିତୃ ହୀନା ;
ହେଲେ ରତ୍ନ ବନବାସୀ
ଯୋଗଖାନେ ହୁଅନ୍ତି ହତ୍ନର
ପିଶାଚୀ କର୍ମ୍ମକୁ ରହୁଁ ଅଳ୍ପ ହିଁ ସାହୁରି
କେ ଜାଣି କି ଭାଗ୍ୟ ଫଳେ—(ଉପବେଶନ)
ଚିନ୍ତା ତାଙ୍କ ଦୁର୍ଭାଗ୍ୟକୁ

ଲଭୁଥିଲ ଏତେଦିନେ ଶ୍ରୀଚରଣ ସେବା ;
ସେ ସେବାର ବଧି ଏବେ କରଇ କଣ୍ଟକା ;
କିମ୍ବା ବଧି ଏତେ ବାଦ ଚୋର ମୋହଠାରେ ?
ଛାଡ଼ ମୋତେ ଚରୁଚଳେ
ଅଣିଲେ ସେ ନେବେ ବୋଲି ଭୋଜନ ସାମଗ୍ରି;
ଘ୍ରାଣ ବୁଝି, ଅସିଥାନ୍ତି ହେଲେ ସଙ୍ଗେ—
ଭୁଇଦଳ ଗଲାକି ନ ଗଲେ ବାହୁଡ଼ି,
ଭୁଇଦଳ ହେଲା ଏବେ କାହିଁ ସେ ରହିଲେ,
କାହା ହସ୍ତେ ହେଲେ ସେ ଅବଦ୍ଧ,
କିବା କି ଦୁର୍ଦ୍ଦଶା ଅନ
ଘଟିଲା କି ଅଭାଗୀ କରମେ !
କିଏ କହେ କହିଲା କୁଳଣ ?
କହିଲେ ଶଜାତିଲ ଘଟେ
ହେଲା କୁଳଣରେ
ନାଶିଥାନ୍ତି ଏ ଯୋଡ଼ାପସ୍ତଣ ,
ସନ୍ତାପିତ ହୃଦୟରେ ସନ୍ତାପ ଅନଳ
ଲଗାଇଣ ଏ ଫୁତ୍କାର ଦେଇ ରୁ ନ ଥାନ୍ତି,
ରେ ଶୀଳା କଠିଣ କଷ !
ଫାଟିଯାନ୍ତି, ନ ସହନ୍ତି ଅଉ ଏ ଯନ୍ତ୍ରଣା ।
ଦଅନ୍ତି ସଲିଲେ ଝମ୍ପ,
ସ୍ୱଚ୍ଛତୋୟା ପୁଷ୍କରିଣି !
ଦେବୁକି ଏ ପିଶାଚୀକୁ ଆଶ୍ରୟ ତୋ କକ୍ଷେ ?
(ଅବା) କରୁଛୁକି ବସ୍ତୁ କାଳେ ଦେବୁ କଚ୍ଛପତା !
ଦେବ ଝମ୍ପ ?—(ନାରବେ ଚିନ୍ତା)
କଲେ ଯେବେ ଦେବ ପ୍ରାଣ

କେମନ୍ତେ ବୁଝିବ କିସ ହେଲା ତାହାଙ୍କର,
ରହିଯିବ ଏ ସନ୍ତାପ ଇହଜନ୍ମ ଲାଗି ;
ପୁଣି ଯେବେ ପଡ଼ିଥିବେ କାହିଁ ସଙ୍କଟରେ,
କେ ତାଙ୍କ ଉଦ୍ଧାର ହେତୁ କରିବ ଯତନ?
ନା, ନ ମରିବ ଏକ୍ଷଣି ମୁଁ ;
ଦେଖିବି ଅଭାଗୀ ଯତ୍ନେ
ହେବ କି ନ ହେବ କିଛି ।

( ଦୁଇଜଣ ରମଣୀଙ୍କର କଳସ କକ୍ଷେ ପ୍ରବେଶ )

ଗୀତ ।

କର କର ସଖୀ ଦରଶନ
ସରେ ସରୋରୁହ ଶୋଭାବନ
ଗଗନେ ଦିନେଶ ବଦନେ ଅନାଇ
ଅହା କି ଅନନ୍ଦେ ଭ୍ରମଗଣ ।
ଅନାଅ ତାପାଶେ କୁମୁଦିନୀ
କାନ୍ତ ଅଦର୍ଶନେ ଅନାଥିନୀ
ମାନସ ସନ୍ତାପେ ମଳିନ ବଦନେ
ଝାପିଦେ ମୁଦଇ ସେ ନୟନ ।

୧ମର—ଆ ଆ ଚାଲ ପାଣିନବା ଯିବା

୨ୟର—ଦେଖ୍‌ଲୋ ଏଇଟି ଗୋଟିଏ ଏଠି ଭଏ ବଇଠି, ଥେଲା ଥୋଇଲା ସର ବୋହୁ ଝିଅଟିପରି ଦିଶୁଚି ।

୧ମର—ଏଠି କାହିଁକି ଏମିତି ଆସି ବସିଚି ?

୨ୟର—ଏଁଲୋ ଭଉଣୀ ତୋଘର କୋଉଠି, ଏଠି କାହିଁକି ବସିଛୁ ?

ରତ୍ନ—ନାଇ ଭଉଣୀ ମୋର ଘରଦ୍ୱାର କୋଉଠି ନାହିଁ, ମାଗିଯାଚି ଖାଏଁ, ଏଠି ଟିକିଏ ବସିଚି ।

୧ମର—ଏଠି ଏକାକିଆଟା କାହିଁକି ବସିଛୁ ? ଆମ୍ଭମାନଙ୍କରେ ଚାଲ

ରତ୍ନ—ହଉ ତୁମେ ଆଗରେ ଚାଲ ମୁଁ ପଛରେ ଯାଉଛି

୧ମର—(୨ୟ ରମଣୀ ପ୍ରତି) ଆ ତେବେ ଆ (କଳସ ମସ୍ତକ ଓ
    ଉତ୍ଥାନୋଦ୍ୟମ)

୨ୟର—(ବିରକ୍ତିରେ) ଆ ରହୁଛି ଉଠି ଆ, ଏଠି ଏକାକିଆ ବସ ନା

(ରମଣୀ ଦୁଇଜଣଙ୍କର ପ୍ରସ୍ଥାନ)

ରତ୍ନ—(ସ୍ୱଗତ)

ଭାବବ, କି ବୁଦ୍ଧି କରିବ ଏବେ !
ଯେ କନ୍ଧର କାହିଁଛନ୍ତି ସେଥୁ,
କେମନ୍ତେ ବୁଝିବି ହେଲା କେଉଁ ପରମାଦ
ଶୁଣିଲେଣ୍ଟି ଅଛନ୍ତି ସେ ଏହି ନଗରରେ,
ଘରେ ଘରେ ଏ ନଗରେ ଖୋଜିବି ମୁଁ ପଶି
ରାଜା ଘରବାରଠାରୁ ଦରିଦ୍ର କୁଟୀର
ଦେଖିବି ମୁଁ ନିଜ ନେତ୍ରେ
ଲଟାଇବି ଶିଖିଅଛି ଯେତେ କଉଶଳ,
ଖୋଜି ଖୋଜି ଅବଶେଷେ
ବୁଝିବି ଯେବେ ମୋ ଆଶା ନ ହେବ ସଫଳ,
ଛାଡ଼ିବି ନିଶ୍ଚୟ ଯେବେ ଏ ଛାର ଜନମେ
ନ ପାଇବି ସେ ପଦ ଦର୍ଶନ ଆଉ,
ତେବେ ମୋ ଅସ୍ତ୍ର ଏହି
ନୀଳତୋୟା ସରୋବର ଗର୍ଭେ ।
ନଗରେ ମୁଁ ଯିବି ଏହିକ୍ଷଣି,
କିନ୍ତୁ ଯିବି କିପ୍ରକାରେ ? (ଚରଣେ ଚିନ୍ତା)
ଅବଳା ମୁଁ, ବୟସେ ଯୁବତୀ,
ଏକାଳେ ନଗର ମଧ୍ୟେ ନାନାଦି ଆଶଙ୍କା,

ଯାଇନେ ଶାର୍ଦ୍ଦୂଳ ସିଂହ ବଳ ଶତଗୁଣେ
ନଗରେ ଭ୍ରମନ୍ତି କାମ, କ୍ରୋଧ, ମୋହ ଆଦ
ମହା ମହା ହିଂସ୍ର ଜନ୍ତୁଗଣେ
ଦିବାନିଶି କି ଆଲୋକେ କିବା ଅନ୍ଧକାରେ,
ବନ୍ୟ ପଶୁ ରକ୍ତ ମାଂସ କରନ୍ତି ଭୋଜନ
ଧରି ମାତ୍ର ଅନିତ୍ୟ ଭୌତିକ ଅଙ୍ଗ
କିନ୍ତୁ ଏହି ଅବନ୍ୟ ଦୁର୍ଦ୍ଦାନ୍ତ ପଶୁ
ଆତ୍ମାରୁ ରୁଧିର ପାନ କରନ୍ତି କୌଶଳେ,
ସ୍ୱକାର୍ଯ୍ୟ ସାଧନେ ବସ୍ତ୍ର ସହିତ ନିୟତ,
ଏବେ ମେ ନଗର ମଧ୍ୟେ ଭ୍ରମଣ ମୋହର
ଯୁକ୍ତ ଯୁକ୍ତ ନୋହେ କଦାଚନେ ।
ଧରିବ ପୁରୁଷ ବେଶ,
ଯୋଗୀ ବେଶେ ଯିବ ଜଣ ଦୁଆର ଛଳ[illegible]
ଦେଖାଯିବ ଯା ଶିବ କରମେ । (ଯୋଗୀବେଶ ଧାରଣ)

ଗୀତ ।

(ଜୟ) ଜୟ ନାରାୟଣ ଭବ ଭୟ ବାରଣ
(ଜୟ) ପତିତପାବନ ଗରୁଡ଼ାସନ ।
ଜୟ ନିରଞ୍ଜନ
ଦୁରିତ ଭଞ୍ଜନ
ଗୋପୀ ମନ ରଞ୍ଜନ, ଜନାର୍ଦ୍ଦନ
କର କୃପା ଦୀନବନ୍ଧୁ ଦୁଃଖି ଦୁଃଖ ନାଶନ ।
(ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ—ବୀରଚନ୍ଦ୍ର ଦେବଙ୍କ ବୈଠକ ଶାଳା

—(ବୀରଚନ୍ଦ୍ର ଦେବ ଆସୀନ ମନ୍ତ୍ରୀ ଓ ଦୂତର ପ୍ରବେଶ ଏବଂ ଅଭିବାଦନ)

ମନ୍ତ୍ରୀ—ମହାରାଜ ପ୍ରଣତି ଶ୍ରୀପଦେ
ରଣଭୀମ ସେନାପତି ହତ ଶତ୍ରୁ ହସ୍ତେ

ବୀର—(ସଚକିତେ)
ରଣଭୀମ ହତ ଶତ୍ରୁହସ୍ତେ!
କି କହୁଛ ! ମନ୍ତ୍ରୀବର ! ଦୂତବର !
ରଣଭୀମ ହତ ଶତ୍ରୁ ହସ୍ତେ ?
କହ ଦୂତ ସବିସ୍ତାରେ,
କେମନ୍ତେ ସେ ନରାଧମ ବଧିଲା ତାହାଙ୍କୁ
ସମ୍ମୁଖ ସଂଗ୍ରାମେ
କିମ୍ବା କୁଟିଳ କୂଟନୀତିରେ
ପାପିଷ୍ଠ ତସ୍କର
ତସ୍କର ସଦୃଶ ହତ କଲ ଅତର୍କିତେ ?

ଦୂତ—ମହାରାଜ ! ଅତର୍କିତେ, ନିଶା ଅର୍ଦ୍ଧଭାଗେ
ଶିବିର ମଧ୍ୟରେ ପଶି
ନିଦ୍ରାଗତ ଅବସ୍ଥାରେ
ଛେଦିଅଛି କଣ୍ଠ ତାହାଙ୍କର ।

ବୀର—ଶୁଣିଲି ବେଳକୁ ଦେହ ଯାଉଅଛି ଜଳ ।
ପାପିଷ୍ଠ ପାମର ଦସ୍ୟୁ
କଷ୍ଟାଙ୍କଟ ହେବୁ ଜନ୍ମ ଜନ୍ମ ।
ମନ୍ତ୍ରୀବର ! କହ ଏବେ କି କରିବା
କି କର୍ତ୍ତବ୍ୟ ଏମନ୍ତ ଅବସରେ ?

ସମ୍ମୁଖ ସଂଗ୍ରାମେ ବଳେ ନ ମିଳଇ ଭେଟ ?
କୁଟିଳ ଉପାୟେ ଆସି ରାଜ୍ୟକଲା ଧ୍ୱଂସ,
ଶୁଣି ଶୁଣି ଏ ସକଳ
ହୃଦି ଦଗ୍ଧି ହେଉଛି ମୋ ଶେଷ ।

ମନ୍ତ୍ରୀ—ମହାରାଜ ! ଛଅ ମାସ ହେଲା ପୂର୍ବେ ;
ପାପୀ ବଳବନ୍ତ ସିଂହ
ଆସି କାହିଁ କର୍ଣ୍ଣାଟ ଅଞ୍ଚଳୁ
ସେହି ବସିଅଛି ପୂର୍ବଖଣ୍ଡ ଶୈଳଭୂମେ,
ତୁଙ୍ଗ ସ୍ଥାନ ବାଛି ଦୁଷ୍ଟ
ମେଘମାଳୀ ପର୍ବତ ଉପରେ
ରହିଅଛି ସ୍ଥାପି ସେ ଶିବିର,
ଯେତେ ଯେତେ ସେନାପତି ଯାନ୍ତି ସୈନ୍ୟସେନ
ସମସ୍ତଙ୍କୁ ଦେଖଇ ପ୍ରଥମରୁ,
ପ୍ରଥମରୁ ଦେଖି ପାପୀ ହୁଅଇ ସତର୍କ,
ଶିବିର ମଧ୍ୟରେ ଲୁଚି ରହଇ ନୀରବେ,
ଅବକାଳେ ଗୋପନେ ଗୋପନେ
ଦୂରବର୍ତ୍ତୀ ଗ୍ରାମେ ଆସି କରେ ଦସ୍ୟୁବୃତ୍ତି,
କ୍ରମେ କ୍ରମେ ପୂର୍ବଖଣ୍ଡ ହେଲା ଧ୍ୱଂସ ପ୍ରାପ୍ତ,
ପ୍ରଜାବର୍ଗ ଲଣ୍ଡଭଣ୍ଡ ଅସ୍ଥିର ଆତଙ୍କେ,
ସହସ୍ର ସହସ୍ର ଲୋକେ ଛାଡ଼ି ଶୈଳଭୂମି
ବାହାରି ଅନ୍ୟତ୍ର ଯାଇ କରନ୍ତେ ବସତି,
ପ୍ରଜାପାଳନ ବିନା ରାଜା,
ପ୍ରଜା ଶୂନ୍ୟ ହେଲେ ରାଜ୍ୟ
କାହିଁରେ ରହିବ ଆଉ ଶ୍ରୀମୁଖ ରାଜନ ?

ବୀର—ଶୁଣି ଅଛୁ ନିତ ନିତ ଏ ବାରତା,
ପ୍ରତିଦିନ ଶୁଣିଅଛୁ ଏ ଗ୍ରାମ ସେ ଗ୍ରାମ
ପାପୀ ବଳବନ୍ତ ସିଂହ ଲୁଣ୍ଠି ଛାର ଖାର,
ଏତେ ଏତେ ଛିନ୍ନ ସୈନ୍ୟ, ଏତେ ଅସ୍ତ୍ର ଶସ୍ତ୍ର,
ପାତ୍ର ମିତ୍ର ଅଗଣନ ଅଛନ୍ତି ରାଜ୍ୟରେ,
ଚତୁର କୌଶଳୀ ବୀର ଧନୁର୍ଦ୍ଧର ବୋଲି
ଏତେ ଏତେ ଲୋକେ ଦମ୍ଭ କରନ୍ତି ନଗରେ,
କାହାନ୍ତି ଏକାଳେ ସର୍ବେ
କାହିଁ ତାଙ୍କ ଚତୁରତା ?
କାହିଁ ଦମ୍ଭ ବୀରତ୍ୱ କୌଶଳ ?
କି କହିବ ! କାହା ଅଗେ କହିବ ଏହା !
ଏତେବଡ଼ ରାଜ୍ୟ ଅମ୍ଭ
ଦେଖୁଁ ଦେଖୁଁ ହେଲା ଧ୍ୱଂସ !
ଧ୍ୱଂସହେଲା ପୁଣି ଏକ
ପାପିଷ୍ଠ କୁଳଙ୍ଗାରର
ଦସ୍ୟୁ ଗୋଷ୍ଠାକର ହସ୍ତେ !
ଧିକ ଧିକ ଶତଧିକ ମୋତେ,
ଧିକ ମୋର ରାଜପଣେ ଧିକ ମୋ ଯଉବନେ
ଧିକ ପାରିଷଦ ବର୍ଗେ, ଧିକ ପାତ୍ର ଗଣେ ।
କି କହିବ ! କାହାଗେ କହିବ ଏହା !
ହେଲା ଯବେ ଧ୍ୱଂସହେଲା ରାଜତ୍ୱ ଅମ୍ଭର !
କାଳେ କାଳେ ରହିବ କଳଙ୍କ,
ବାଳକେ ହସିବେ ପଢ଼ି ଶୁଣିଣ ଏ ଗଳ୍ପ,
ମନ୍ତ୍ରୀବର ! କର ଏହି ବିହିତ ବିଧାନ ।

ଦୂତ—ମହାରାଜ ସେନାପତି ବନ୍ଦନେ ଶିବାରେ
ଦୁର୍ଦ୍ଦାନ୍ତ ସୈନ୍ୟବୃନ୍ଦ ହୋଇ ଛତ୍ରଭଙ୍ଗ,

ବୀର—ମନ୍ତ୍ରୀବର !
ପେଶ ଯୋଗ୍ୟଜନ ତଥା ସେନାପତି ପଦେ,
କହ ତାଙ୍କୁ ରହିବେ ସତର୍କ ;
ତନ୍ତ୍ର ଏହା ଜାଣିବ ନିଶ୍ଚୟ
ସମ୍ମୁଖ ସଂଗ୍ରାମେ ପାପୀ ନ ଆସିବ କେବେ,
ଲୁଚି ଲୁଚି ତସ୍କର ପରାଏ
ନାନାଦି ଅନିଷ୍ଟ କାର୍ଯ୍ୟ କରିବ ସାଧନ,
ଅବିଳମ୍ବେ କର ତାର ବିନାଶ ବିଧାନ ।
ଗ୍ରାମେ ଗ୍ରାମେ କରାଅ ଘୋଷଣା—
ଲୁଣ୍ଠନ ମାନସେ ଗ୍ରାମେ କଲେକ ପ୍ରବେଶ
ବଳବନ୍ତ ସିଂହ ପ୍ରାଣ ବଧିବା ପାଇଁ କି
କରିବେ ଯତନ ସର୍ବେ,
ଯେଉଁ ବନ୍ଦୀ ଆଣିବେ ତାହାକୁ,
ଅବା ବଧି ଦେଖାଇବେ ଶିର
ବହୁ ଧନ ବହୁ ରତ୍ନ
ଭୂସମ୍ପତ୍ତି ବହୁ ପରିମାଣେ
ପୁରସ୍କାର ମିଳିବ ତାହାଙ୍କୁ ।

ମନ୍ତ୍ରୀ—ଏ ଘୋଷଣା ଗ୍ରାମେ ଗ୍ରାମେ ନଗରେ ନଗରେ
ହୋଇଅଛି ବହୁଦିନୁ ତୁମ୍ଭଙ୍କ ଆଦେଶେ ।

ବୀର—ପୁନର୍ବାର ତେବେ ତୁମ୍ଭେ କରାଅ ଘୋଷଣା
ବଳବନ୍ତ ସିଂହ ପାପିଷ୍ଠକୁ
ଯେଉଁ ଆଣିଦେବ ଧରି

ଜମ୍ବା ଛେଦ ମସ୍ତକ ତାହାର
ଦେଖାଇବ ଯେ ଜନ ଆମ୍ଭଙ୍କୁ
ଦେବା ତାକୁ ସୌରଭୂମି ରାଜ୍ୟର ଅର୍ଦ୍ଧାଂଶ
ରଞ୍ଜଳା ନାମରେ ଆମ୍ଭ କନିଷ୍ଠା ଯେମାନ୍ତୁ
ଅର୍ପିବା ତାହାଙ୍କ କରେ ।

ମନ୍ତ୍ରୀ—ଯଥା ଆଜ୍ଞା ମହାରାଜ ।

(ଜଣେ ଛଦ୍ମବେଶୀ ବ୍ୟକ୍ତିର ପ୍ରବେଶ)

ଆଗତବ୍ୟକ୍ତି—ମହାରାଜ ! ପ୍ରଣତ ଶ୍ରୀପଦେ
ଆଜ୍ଞା ହେଲେ ଛାମୁଙ୍କର
ଏ ଅଧିନ ସେନ ଅସ୍ତ୍ରଶସ୍ତ୍ର
ଶତ୍ରୁ ବଧେ ଶୁଦ୍ଧଯାତ୍ରା କରନ୍ତା ଏକ୍ଷଣି,
ବଧିବ ଅଗ୍ରତ କଷ୍ଟେ ପ୍ରତିଜ୍ଞା ମୋହର
[illegible] ଛାମୁ ପ୍ରତିଜ୍ଞା ପାଳନେ
ନ ହେବେ କୁଣ୍ଠିତ ପଛେ ।

ବୀର—ନାହିଁ ନାହିଁ କେବେହେଁ ନୁହେଁ କେବେହେଁ ନୁହେଁ,
ଅଟଳ ପ୍ରତିଜ୍ଞା ମମ,
ପ୍ରତିଜ୍ଞା ମୋ ନ ହେବ ଲଙ୍ଘନ,
ନ ହେବ ମୁଁ ସତ୍ୟଭ୍ରଷ୍ଟ,
ଭାଗ୍ୟେ ଯାହା ଥିବ ଜେମାଙ୍କର ।
ଜହପଣ ଶିବଧନୁ ଭଗ୍ନ
ଲଭିଲେ ଜାନକୀସ୍ୱାମ,
ଏହିପଣ ରହିଲା ଆମ୍ଭର,
ଭାଗ୍ୟର ପରୀକ୍ଷା ଏହି ଅଟେ ଜେମାଙ୍କର,
ବ୍ରାହ୍ମଣ କ୍ଷତ୍ରୀୟ ଶୂଦ୍ର
ଅବା ଯେବେ ହେବ ସେ ଚଣ୍ଡାଳ,

ସୌନ୍ଦର୍ଯ୍ୟ, ଭୂଷିତ, ଅଙ୍ଗ,
ହେଉ ଶତ୍ରୁ, ହେଉ କୁବ୍ଜ ହେଉ ସେ ବଧିର,
ତଥାପି ଏ ପ୍ରତିଜ୍ଞା ଆମ୍ଭର—
ଯେହୁ ଶତ୍ରୁ କରିବେ ନିଧନ,
ରାଜ୍ୟର ଅର୍ଦ୍ଧାଂଶ ସହ
କନ୍ୟା ତାଙ୍କୁ କରିବା ପ୍ରଦାନ ।

ଅଗଛବ୍ୟ—(ସ୍ୱଗତ)

କାହିଁ ଯିବ ? ନ ପାରିବ ପଳାଇ ମୋ ପାଶୁଁ,
ନ ପାରିବ, ନ ଯିବ ସେ ବଳ କଦାଚରେ,
କେତେ କେତେ ଚକ୍ଷୋଇନେଇଲି,
ଏଣ୍ଡୁଅ, ଗୁଣ୍ଡିଚିମୁଷା,
ଧରିଅଛି ଏ ଜୀବନେ ମୁହିଁ,
ଗୃଳରେ ଚୁଟିଅମୁଷା
ଲୁଚି ଲୁଚି ଗୁପ୍ ଗୁପ୍ ଗୁପ୍ ଗୁପ୍
ଯାଉଥାନ୍ତି ଯେତେବେଳେ,
ଏକା ଏକା ଚେଙ୍କାରେ ମୁଁ ପକାଏ ଭୁଡଲେ,
ପକ୍ଷୀ ଶ୍ରେଷ୍ଠ ଉଲ୍ଲୁକ ମୁଁ ଧରେଁ ଦନ୍ତାଘାତେ,
ମନୁଷ୍ୟଙ୍କ ଚଳିଯିବ କାହୁଁ ?
ନ ଜାଣଇ ଜଡ଼ ସେହୁ,
ନୁହଇ କାମୁଡ଼ା ଜନ୍ତୁ,
ନିଶ୍ଚୟ ମୁଁ ଧରିବ ତାହାକୁ,
ଭଲେ ଏଥି ନାହିଁ ମୋ ସଂଶୟ ।
ଚନ୍ଦ୍ର ବଦନେମା ! ଲାବଣ୍ୟ ପ୍ରତିମାଶ୍ରେଣି !
ଷୋଡ଼ଶୀ ରୂପସୀ ବାଳା !

ଯୌବନରେ ଟଳ ଟଳ ଢଳ ଢଳ !
ଏ ରୂପେ କି ହେବ ସେ ସନ୍ତୁଷ୍ଟ ?
ଅସନ୍ତୁଷ୍ଟ ଅବା କାହିଁପାଇଁ ?
ଦନ୍ତ ଗୋଟାକେତେ ମୋର ପଡ଼ିଅଛି ଖସି,
କେଶ ଗୋଟିକେତେ ମୋର ହୋଇଅଛି ଶୁଭ୍ର,
ଦେଖାଯିବ ଚେତେବେଳେ,
ରାଜ୍ୟର ଅର୍ଦ୍ଧାଂଶ ମୋର ନ ଯିବତ କାହିଁ ।
(ପ୍ରକାଶ୍ୟ) ମହାରାଜ ହେଉଛି ମେଲାଣି ।

(ଅଭିବାଦନ ଓ ପ୍ରସ୍ଥାନ)

(ଦ୍ୱାରୀର ପ୍ରବେଶ ଓ ଅଭିବାଦନ)

ଦ୍ୱାରୀ—ମହାରାଜ୍
ବିଦେଶୀ ସିପାହୀ ଏକ ଉଭା ଦ୍ୱାରଦେଶେ,
ଶ୍ରୀମୁଖ ଦର୍ଶନ ହେତୁ କରନ୍ତି ପ୍ରାର୍ଥନା ।
ରାଜ— ଆଣ ତାଙ୍କୁ ବେଗେ ଏ ସ୍ଥାନକୁ ।

(ଦ୍ୱାରୀର ଅଭିବାଦନ ଓ ପ୍ରସ୍ଥାନ)

(ଦୁର୍ଜ୍ଜନସିଂହର ପ୍ରବେଶ)

ଦୁର୍ଜ୍ଜନ—(ସ୍ୱଗତ)
ପ୍ରଥମରେ ହେଲି ଯୋଗୀ,
ଏଣିକେତେ ହେଲି ମୁଁ ବାଉଳ,
ତଦନ୍ତେ ଭିକ୍ଷୁକ, ପାନ୍ଥ, ହେଲି ମୁଁ ବଣିକ,
ଶିଳ୍ପକର, ଯାଦୁକର ଆଦ କେତେ ବେଶ
ଧରି ଧରି ଏତେଦିନେ ହେଲି ଶ୍ରମସାର୍ଥ ।
ଏତେଦିନେ ବୁଝିଲି ମୁଁ ଜାତିବେଶ ମୋହର
ଅଛନ୍ତି ଅବଶ୍ୟ ଅଧି ରାଜକାରାଗୃହେ ।
କି ଉପାୟ କରିବି ମୁଁ ଏବେ ;
କି ଉପାୟେ ହେବ ତାଙ୍କ ମୁକତ ବନ୍ଧନ !
ବଳବନ୍ତ ସିଂହ ନାମେ ଶୁଣିଲି ଅଛନ୍ତି

ଅବି ତାହାଂକରଅଛୁ ରାଜ୍ୟ ଆକ୍ରମଣ ।
ରାଜାଠାରୁ ଘୃଣାଯାଏ ସମସ୍ତେ ଏ ରାଜ୍ୟେ
ତା ଲଗ୍ନେ ଅସ୍ଥିର ଅଛି ;
ହେଲେଁ ଥରେ କର ମୁଁ ଯତନ,
ଛଳେ ବଳେ କୌଶଳରେ ଜିଣିଲେ ତାହାକୁ
ହେବେଁ ରାଜା ହେବେ ସୁପ୍ରସନ୍ନ ।
ତା ହେଲେ ପୂରିବ ଯେବେ କାମନା ମୋହର ।
(ପ୍ରବେଶ) ମହାରାଜ ପ୍ରଚଣ୍ଡ ଶ୍ରୀପଦେ (ଅଭିବାଦନ)
ବୀର—କିଏ ତୁମ୍ଭେ ? କିପାଁ ତବ ଆଗମ ଏସ୍ଥଳେ ?
ଦୁର୍ଜନ—ମହାରାଜ ! ବସ୍ତୁହୁରେ ନିବାସ ମୋହର,
କ୍ଷତ୍ରିୟ ମୁଁ, ନାମ ମୋ ଦୁର୍ଜନ ସିଂହ,
ଆସିଅଛି ଶ୍ରୀ ଛାମୁକୁ
ଶୁଣି ଶୌର୍ଯ୍ୟ ଛାମୁଙ୍କର,
ଜାଣେ କିଛି ମଲ୍ଲ କ୍ରୀଡ଼ା,
ଶିଖିଅଛି ଅସ୍ତ୍ରାଦ ଚାଳନା,
ସିପାହୀଙ୍କ ସିପାହୀ ପଣକୁ
ଯେତେ ଯେତେ କାର୍ଯ୍ୟ ପ୍ରୟୋଜନ,
ସାଧିଅଛି ସେ ସମସ୍ତ କରି କରି ମୁହିଁ,
ଶତ ଶତ ଶ୍ରୀଛାମୁଙ୍କ ଅଛନ୍ତି ସିପାହୀ,
ରହୁଛନ୍ତି, ଯାଉଛନ୍ତି, ଆସୁଛନ୍ତି ପୁଣି,
ଆସିଅଛି ଏ ଅଧୀନ ଶୁଣି ସେ ସମ୍ବାଦ,
ସିପାହୀର ପ୍ରାର୍ଥନା ଛାମୁରେ ।
ବସ୍ତୁ ଦେଖେ ବସ୍ତୁ ସ୍ଥଳେ
ସିପାହୀବୃତ୍ତିରେ ଶ୍ରେଷ୍ଠ
ଲଭିଅଛି ଏ ଅଧୀନ ।

ବୀର—ନ ହେଉଁ ସନ୍ତୁଷ୍ଟ ଆମ୍ଭେ
ଶୁଣି ତୁମ୍ଭ ପୂର୍ବ ଖ୍ୟାତ ବାକ୍ୟ ଅଡ଼ମ୍ବର ;
ଜାଣ ଯେବେ ମଲ୍ଲକ୍ରୀଡ଼ା,
ଶିଖିଅଛ ଯେବେ ଅସ୍ତ୍ର ବିଦ୍ୟା ।
ଦିଅ ତାର ପରିଚୟ ଦେଖାଇ କୌଶଳ ;
ବଳବନ୍ତ ସିଂହ ନାମେ ଦୁର୍ଦ୍ଦାନ୍ତ ଅସୁର
ସେହି ବସିଅଛି ପୂର୍ବ ଖଣ୍ଡ,
ସମ୍ମୁଖ ସଗ୍ରାମେ ବଳେ ନ ହେଲା ସେ ଭେଟ,
ପାପିଷ୍ଠ ଲୁଟିଲ କ୍ରୂର କୂଟ ବ୍ୟବହାରେ
କଲା ମୋର ରାଜ୍ୟ ଧ୍ୱଂସ,
ପ୍ରଜାବର୍ଗ ଲଣ୍ଡଭଣ୍ଡ ଆତଙ୍କେ ତାହାର,
ବଳେ ଛଳେ ଅବା ଯେ କୌଶଳେ
ଆଣିବ ତାହାକୁ ଯେବେ,
ବନ୍ଧା ବନ୍ଦୀ ଆଣିବ ମୋପାଶେ,
ରାଜ୍ୟରୁ ଅର୍ଦ୍ଧାଂଶ ଆମ୍ଭେ ଦେବା ପୁରସ୍କାର,
କନ୍ୟା ଏକ କରିବା ପ୍ରଦାନ ।
ବୁଝି ନିଜ ସାହସ ସାମର୍ଥ୍ୟ
ହୁଅ ବେଗେ ଏ କାର୍ଯ୍ୟେ ତତ୍ପର,
ମାର ଅରି, ଆସ ରାଜପୁରେ,
ତା ନ ହେଲେ ଫେର ସେହିପଥେ;
ପୁନଃ ଆଗମନେ ଏଥି ନାହିଁ ପ୍ରୟୋଜନ ।
ଦୁର୍ଜନ—ଯଥା ଆଜ୍ଞା ମହିମାଙ୍କ (ଅନ୍ତରାଳେ)
ଦେଖିଁ ଥରେ କେମନ୍ତ ଅସୁର ;
ଯେବେ ଯାହା ହେବ ପ୍ରୟୋଜନ
ଆଜ୍ଞା ହେବ ଶ୍ରୀ ଛାମୁରୁ ।

ରାଜ—ଅବଶ୍ୟ, ଅବଶ୍ୟ ଆମ୍ଭେ ଯୋଗାଇବୁଁ ସବୁ ।
ମନ୍ତ୍ରୀବର !
ଯେବେ ଯାହା ପ୍ରୟୋଜନ ହେବ ଏହାଙ୍କର
ଅବିଳମ୍ବେ ଯୋଗାଅ ସକଳ ।

ମନ୍ତ୍ରୀ—ଯଥା ଆଜ୍ଞା ମହାରାଜ ।

ରାଜ—(ସ୍ୱଗତ)
ଏ ସିପାହୀ ! ଏ ଯୁବକ !
ସାମାନ୍ୟ ସିପାହୀ ବୋଲି ଦେଲେ ପରିଚୟ !
କିନ୍ତୁ ଦେଖି ଆକୃତି ତାହାଙ୍କ
ସମ୍ଭ୍ରାନ୍ତ ବଂଶଜ ବୋଲି ହୁଏଇ ପ୍ରତ୍ୟୟ,
କେତେ କେତେ ନୃପସୁତ
ଜ୍ୟେଷ୍ଠ ଭ୍ରାତା ହେଲେ ରାଜ୍ୟେଶ୍ୱର,
କ୍ଷତ୍ରୀୟାଦିମାନେ ରାଜ୍ୟ ତ୍ୟଜିଣ ଭ୍ରାତାଙ୍କ,
ଭ୍ରମନ୍ତି ସିପାହୀ ବେଶେ ଆନ ଦେଶେ ଦେଶେ;
ହେଲେ ହେବେ ଏଜଣେ ତେମନ୍ତ ;
ବଧିବେ ଅରାତି ଯେବେ— (ନୀରବ)
ଭାଗ୍ୟଲିପି କେ ଜାଣେ କାହାର
କେ କହିବ କାହା ଭାଗ୍ୟେ କିବା ଭବିତବ୍ୟ ।
ଭଲ ମନ୍ଦ ଯାହା ଥିବ ଅଦୃଷ୍ଟେ ଜେମାର
ଅବଶ୍ୟ ଘଟିବ ତାହା,
ଅକାରଣ ଏ ଚିନ୍ତା ଆମ୍ଭର ।

(ପଟକ୍ଷେପ)



# ଚତୁର୍ଥ ଅଭିନୟ ।

## ପ୍ରଥମ ଦୃଶ୍ୟ—ବଳଭଦ୍ର ସିଂହଙ୍କ ଶିବିର ପ୍ରାଙ୍ଗଣ ।

(ଏକଜଣ ଭିକାରିଣୀର ପ୍ରବେଶ)

ଗୀତ ।

ଭଣ ମା ଭାସିଲି ମହା ବିପଦ ସାଗରେ
ପାଇବାର ତୋର କୃପା ତରଣୀ ମଙ୍ଗରେ । ଘୋଷା ।
ଅନ୍ଧକାର ଚଉଦଗେ          କୂଳଥଳ ନାହିଁ ଦଶେ
ପଡ଼ାଇଲ କିମ୍ପା ମାଗୋ ଏ ଦୁରଯୋଗରେ ।୧।
କାହିଁ ପିତା କାହିଁ ମାତା,     କାହିଁ ବନ୍ଧୁ କାହିଁ ଭ୍ରାତା,
ତ ବଳବ କାହିଁଯିବ କେବଣ ଦଗରେ । ୨ ।

G. S.

ଭିକା— (ସ୍ୱଗତ)

ବନ୍ଧୁଘରେ ବୁଲିଅଛି
ବଳଭଦ୍ର ସିଂହ ପାପୀ ଲମ୍ପଟ ପ୍ରକୃତ,
ଲମ୍ପଟତା ଦୋଷେ ଦଳେ ହେବ ତା ବିନାଶ ;
ଜଣାଗଲା ଦୁର୍ବଳତା;
ବୁଝାଗଲେ ବୈରୀ ବେଗ ମର୍ମ
ସହଜେ କହିତ ହୁଏ ଔଷଧ ତାହାର ।
ସେତ ଭଲ ପଛକଥା—
ଅଦ୍ୟ ଶିବିରେ ଯଦି କଲି ମୁଁ ପ୍ରବେଶ
ଅନ୍ତରର ନ ପେନ ଅଦେଶ,
ପ୍ରବେଶିଲି ଅନ୍ତରର ଅଜ୍ଞାତ ମାର୍ଗରେ,
ତ ଗତି ମୋ ହେବ ଏହିକ୍ଷଣି !
ଦେଖାଯାଉ ! ଇଚ୍ଛା ପ୍ରଭୁଙ୍କର !

ଶ୍ରୀପଦପଙ୍କଜ ହର ଏକାନ୍ତ ଭରସା
ଏକା ସେହୁ ଗତି ଅଟଇର ।
ଆସନ୍ତି ପ୍ରହରୀଗଣ
ପ୍ରଭୋ ! କୃପାମୟ ! କୃପାକର ।

(ପ୍ରହରୀମାନଙ୍କର ପ୍ରବେଶ)

ପ୍ରହରୀମାନେ ସମସ୍ତେ—କୋନ୍ ହେ ତୁମ୍ ?
୧ମ ପ୍ରହ—କେସା କରକେ ଆୟା ?
୨ୟ ପ୍ରହ—ଇହାଁ କାହେ ଆୟା ?
୩ୟ ପ୍ରହ—କିସ୍‌କା ହୁକୁମ୍‌ସେ ଇହାଁ ଆୟା ?
୧ମ ପ୍ରହ—ଯବାବ ଦେଓ
୨ୟ ପ୍ରହ—ପାକଡ଼ୋ ଇସ୍‌କୁ
୩ୟ ପ୍ରହ—(ଗୋପନରେ) ଖବର ଦାର୍, ଖବର ଦାର୍, ମତ୍‌ଛୁଓ, ମୈ ଆଦମିକା ଏସା ମାଲୁମ୍ ନେହିଁ ହୋତାହେ, ମୈ ଜାନ୍‌ତା କୋଇ ଯୋଗୀନ୍ ବା ଦେବୀ ହୋଗି ।
୪ର୍ଥ ପ୍ରହ—ମିଝକୁ ଦେଖନେ ଦହସତ୍ ମାଲୁମ ହୋତାହେ ।
୧ମ ପ୍ରହ—ଅଚ୍ଛା ଦରୟେଆନ ଲୋକ୍ ହେସେ ଛୋଡ଼୍ ଦଏ ଇନ୍ କୋ ?
୪ର୍ଥ ପ୍ରହ—ପୁଛନେସେ ମାଲୁମ ପଡ଼େଗା ।

(୪ର୍ଥ ପ୍ରହରୀର ପ୍ରସ୍ଥାନ)

୧ମ ପ୍ରହ—ମା ! ଆପ୍ କ୍ୟା ଚାହାତେହେଁ ? ଆପ୍ ଇହାଁ କାହେ ଆଏଁ ହେଁ ?
୩ୟ ପ୍ରହ—ଦେଖୋ ଭାଇ ମୈଂ କହା ଆଦ୍‌ମି ନେହିଁ ହେ । ଇନ୍‌କା ଆଁଖ୍ ଦେଖୋ—ବାବା ରେମଇ ! କେୈସେ ଚକାଚକା ଦେଖତା ।

ଇନ୍‌କା ପଏର ସେ ଶିରତକ୍ ଲକାଓ, ମ୍ୟେ ଲୁଛବ ଅଦ୍‌ମି ଲୈହୌଁକା ଏସା ନେହିଁ ହେ ।

(ଚତୁର୍ଥ ପ୍ରହରୀର ପ୍ରବେଶ)

୪ର୍ଥ ପ୍ରହ—ଅରେ ଭୟ୍ୟା ! କ୍ୟା ତାଜବ୍‌କୀ ବାତ୍ ! ଓ ଲୋକ କୋଇ ଦେଖା ନାହିଁ ! କେସାକରକେ ଅୟା !

୩ୟ ପ୍ରହ—ହାମ୍ ପହେଲେସେ ବୋଲ୍‌ତା ମ୍ୟେ ଜଙ୍ଗଲ୍‌କା ଦେଓ ହୋଗି, ମ୍ୟେ ଜଙ୍ଗଲ୍‌ମେ ବହୁତ୍ ଏଇସା ଦେବତା ବାତ୍ ମେ ଶୁନା ହୌଁ ।

୨ୟ ପ୍ରହ—ଅବ କ୍ୟା କିଆ ଯାଏଗା ?

୧ମ ପ୍ରହ—ଇନ୍‌କୁ ଧକ୍ କରନା କବୁ ଅଚ୍ଛା ନେହିଁ ହେ ।

୨ୟ ପ୍ରହ—ତବ୍ ହାମ୍ ଯାତାହୌଁ, ବଲବନ୍ତ ସିଂହ ମହାରାଜ ସାହେବ୍‌କୁ ଖବର୍ ଦେଙ୍ଗେ, ହଜୁରକୋ ଯେସା ହୁକୁମ୍ ହୋଗା ଓସା କିଆ ଯାଏଗା ।

୧ମ ପ୍ରହ—ଅଚ୍ଛା ତବ୍ ଯାକେ ଯଲ୍‌ଦିର ଖବର ଦେଓ ।

(ଦ୍ୱିତୀୟ ପ୍ରହରୀର ପ୍ରସ୍ଥାନ)

୩ୟ ପ୍ରହ—ଦେଖୋ ଭୟ୍ୟା ଇହାଁ ରହେନାବ ଅଚ୍ଛା ମାଲୁମ୍ ନାହିଁ ହୋତା ହେ, ମ୍ୟେ ଯବ୍ ଗୋସା ହୋଁଗେ ତ ପହଲେଇ ହାମ୍‌ଲୋକୋଙ୍କୁ ଖା ଯାଏଙ୍ଗେ ।

୪ର୍ଥ ପ୍ରହ—ମ୍ୟେ ବାତ୍ ଠିକ୍ ହେ, ମ୍ୟେ ବାତ୍ ଠିକ୍ ହେ ।

ସମସ୍ତେ—ଚଲୋ ଚଲୋ ଚଲୋ (ସମସ୍ତ ପ୍ରହରୀମାନଙ୍କର ପ୍ରସ୍ଥାନ)

ଲିଳାବଣୀ—ଭଗବାନ୍ ! କରୁଣାନିଧାନ !
ଅପାର ମହିମା ତବ,
କି ସାଧ୍ୟ ମାନବ ଛାର ବୁଝିବ ସେ ସବୁ ;
କାଳକୂଟ ସମ ଗୋଟି ଗୋଟି
ଅସଂଖ୍ୟ ପ୍ରହରୀଗଣ ପ୍ରକାଣ୍ଡ ମୂରତି,

ସେହିଗଡରେ ଆସି ଯେବେ,
ଚମକିଲା ହୃଦୟ ମୋହର ;
କନ୍ୟା ଆହା ରତ୍ନପାଇଁ !
ଆବଦ୍ଧ ରତ୍ନ ଆବରଣେ ;
ବଳା ବାକ୍ୟବାଣ୍ୟେ ସର୍ବେ ପଳାଇଲେ ଡରେ ;
ପ୍ରକଟ ଅପର ଜଣେ—

(ଏକଜଣ ପ୍ରହରୀର ପ୍ରବେଶ)

ଅଗତ ପ୍ରହରୀ—( ଭୟେ କମ୍ପିତ ହୋଇ )
ଆଁ—ଆଁ—ବାବା—ବାବା—ଅମା
ଯୋଗୀନ୍ ସବଭୋଇକୁ ଖା ଗଇନ୍ !
ମା ! ମା ! ହାମାସ୍ରଂକୁଭ୍ କସୋର ନେହିଁ ଦେ,
ମାଫ କରେ, ମାଫ କରେ, କାହିଁ ଯାଉଙ୍ଗା !
ମା ! ମା ! (ପ୍ରସ୍ଥାନ) .

ଉଦ୍ଧାରଣୀ—ଯିବ ଏବେ ଖୋଜି ଖୋଜି
ଦେଖିବ ରହନ୍ତି କାହିଁ ବଳବନ୍ତ ସିଂହ ;
ଏହିକ୍ଷଣି ହେବ ମୋର ଭାଗ୍ୟର ମୀମାଂସା ;
ସମ୍ମୁଖେ ଦଣ୍ଡଇ ଏହି
ସର୍ବାପେକ୍ଷା ସୁସଜ୍ଜିତ କକ୍ଷ,
ଅବେ ବଳବନ୍ତ ସିଂହ ନିଶ୍ଚୟ ଏ କକ୍ଷେ ;
ଯାଏଁ ଦେଖେ କି କହନ୍ତି ସେହି ।

(ପ୍ରସ୍ଥାନ)

———

## ଦ୍ୱିତୀୟ ଦୃଶ୍ୟ—ଚଳଚନ୍ଦ୍ର ସିଂହଙ୍କ କକ୍ଷ ।

(ଚଳଚନ୍ଦ୍ର ସିଂହ ଆସୀନ, ପ୍ରହରୀଗଣ ଦଣ୍ଡାୟମାନ)

ପ୍ରହରୀଗଣ—ହଜୁର ! ହଜୁର ! ଇଧର୍ ଆତା ଯୋଗିନ୍ ଅଗିଆଡ
(ରତ୍ନାକରୀର ପ୍ରବେଶ) ମା ! ମା ! ହାମ୍ ଲୋକ୍କା ଦୂଷ
କସୋର ନେହିଁ ହେ

(ପହ୍ରୁଆ ଠପଠପ ଓ ପ୍ରହରୀମାନଙ୍କର ପ୍ରସ୍ଥାନ)

ଚଳଚନ୍ଦ୍ର—କିଏ ତୁମ୍ଭେ ? କିପାଁ ତବ ଆଗମ ଏ ସ୍ଥଳେ ?
ରତ୍ନା—କିବା ପ୍ରୟୋଜନ ତବ ପରିଚୟେ ମମ ?
ବେଶଭୂଷା ଦରଶନେ
ନ ବୁଝନ୍ତି ଯେହୁ ପରିଚୟ,
ନିତାନ୍ତ ନିର୍ବୋଧବୋଲି ଗଣେ ମୁଁ ତାହାଙ୍କୁ,
ନିର୍ବୋଧଙ୍କୁ ପରିଚୟ ନ ଦିଏ ମୁଁ କେବେ,
ନିର୍ବୋଧଙ୍କ ଠାରେ ନାହିଁ ମହତ୍ଵ ମର୍ଯ୍ୟାଦା,
ନିର୍ବୋଧଙ୍କଠାରେ ଆଶା ନ ହୁଅଇ ପୂର୍ଣ୍ଣ ।

ଚଳଚନ୍ଦ୍ର—ବେଶ ଭୂଷଣରେ ତୁମ୍ଭେ
ଦିଶୁଅଛ ରତ୍ନାକରୀ ସମ,
କିନ୍ତୁ ତୁମ୍ଭେ ପଶିଅଛ ଭିକ୍ଷାର ମାନସେ
ଏମନ୍ତ ପ୍ରତ୍ୟୟ ମୋର ନ ହୁଅଇ ମନେ ।

ରତ୍ନା—କିସ ହେବେ ହୁଅଇ ପ୍ରତ୍ୟୟ ?
ଚଳ—ଭିକୁଅଛୁ ଅଧିଥିବ
ଅନ୍ୟ କିଛି ପ୍ରାର୍ଥନାରେ ।
ରତ୍ନା—'ପ୍ରାର୍ଥନା' 'ଭିକ୍ଷା'ର ଯେହୁ କରେ ଭିନ୍ନ ଅର୍ଥ
ମୂର୍ଖ ଭିନ୍ନ ଅନ୍ୟ କିଛି ନ କହେଁ ମୁଁ ତାକୁ ।

ଚନ୍ଦ୍ର—(ସ୍ୱଗତ)

ରତ୍ନ ସ୍ୱରୂପ ଏ ରମଣୀ,
ଉଜାଇଣୀ ନୋହେ କଦାଚନେ ।
ବୁଝି ନ ହୁଅଇ କିଛି ଉଦ୍ଦେଶ୍ୟ ଏହାର ।
(ପ୍ରକାଶ୍ୟେ)
ମାନିଲି ମୁଁ ପରାଜୟ
ବାକ୍ୟଯୁଦ୍ଧେ ତୁମ୍ଭ ସହିତରେ,
ନାରୀ ତୁମ୍ଭେ, ନାରୀଙ୍କର ବାକ୍ଚାତୁରୀ
ପୁରୁଷଙ୍କ ବୁଦ୍ଧିର ଅଗମ୍ୟ,
ସହିଁଲେ କର୍କଶମୟ ପୁରୁଷ ପରାଣ,
ପୁଣି ଅମ୍ଭେ ରଣବ୍ୟବସାୟୀ,
କଠିଣ ପ୍ରକୃତି ସଦା କଠିଣ ସ୍ୱଭାବ
ନ ବୁଝୁଁ ଯତନେ ଅମ୍ଭେ ନାରୀ ଚପଳତା ;
ଦୟାକରି କହ ତବ ଅମୋଲ ବାର୍ତ୍ତା ।
କୃପାକରି ଦିଅ ପରିଚୟ ।

ଉଜା—ବୀରମଣି ! ବୀରକୁଳଶ୍ରେଷ୍ଠ !
ଉଜାଇଣୀ ନୋହେ ମୁହିଁ,
ଉଜାଇଣୀଠାରୁ ହୀନା ଉଜାଇଣୀ ଦାସୀ ।

ଚନ୍ଦ୍ର—(ସହାସ୍ୟେ)
ଉଜାଇଣୀ ଦାସୀ ତୁମ୍ଭେ ?
ସାମାନ୍ୟ ସେ ଉଜାଇଣୀ ନୁହନ୍ତି କଦାଚ
ତବ ସମ ଦାସୀ ଯାଙ୍କ ଖଟନ୍ତି ଅଗ୍ରରେ ।

ଉଜା—ନୋହେ କିଛି ଏକା ମୁହିଁ
ମୋ ସମାନ ଶତ ଶତ ଦାସ ଦାସୀ
ଖଟନ୍ତି ସେ ଉଜାଇଣୀ ପଦେ ।

ନଳ—ଉପାସଣୀ କି ପ୍ରକାରେ ତେବେ ସେଠୁ ?

ଉବା—ଉପାସଣୀ—ପ୍ରେମଉପାସଣୀ ?
ଯାର ପ୍ରେମ ଉପାସଣୀ ସେଠୁ ।
ଶୁଣି ତବ ଯାଉଛୁ କୌଶଳ,
ଶୁଣି ତବ ଗୁଣ ଗାଥା ଉଦାର ଚରିତ,
ଗୁଣେ ଦମ୍ଭ, ପୁଣି ବଦାନ୍ୟତା,
ସରଳ ସୌଜନ୍ୟ ଭାବ ସର୍ବଦ ଚିତ୍ତରେ,
ଅର୍ପିଛନ୍ତି ଠାକୁରାଣୀ
ମନପ୍ରାଣ ତୁମ୍ଭର ଚରଣେ ।
କହୁ ରହି ଥାଏଁ ଏଣୁ—
ଏ ଗୁଣ ବର୍ଣ୍ଣନା ତବ ନୁହଇ ମୋହର,
ଏ ବର୍ଣ୍ଣନା ଠାକୁରାଣୀଙ୍କର,
କହିଲି ମୁଁ—କଥା ତାହାଙ୍କର ;
କିନ୍ତୁ ଦେଖି ନିଜ ନେତ୍ରେ
ବୁଝିଲି ମୁଁ ପୂର୍ଣ୍ଣ ବିପରୀତ,
ଦୁର୍ବୋଧ ନିଷ୍ଠୁର ତୁମ୍ଭେ ମୂର୍ଖ ଶିରୋମଣି ;
କେଉଁଗୁଣେ ଠାକୁରାଣୀ ମୁଗ୍ଧ ହୋଇ ମୋର
ଅର୍ପିଲେ ଜୀବନ ମନ ନ ବୁଝିଲି ମୁହିଁ ।

ନଳ—କହ ତେବେ ବୁଝାଇ ତାହାଙ୍କୁ
ଏତ ଅପଦାର୍ଥ ମୁହିଁ,
ଏ ବାସନା କଳ୍ପନା ଠାକୁରାଣୀଙ୍କର ।

ଉବା—କହିବ ମୁଁ, କରିବ ଯତନ
ଟଳାଇବା ଆଶେ ମତି ତାଙ୍କ;
କିନ୍ତୁ ବୁଝିଅଛି ମତି ନୋହେ ଟଳିବାର ;

ନାନାବିଧ ଲୁବାକ୍ୟ ଛଳ ଗାଇଲି ଅଶ୍ୟାତ,
ଶୁଣି ଶୁଣି ହୋଇ ଅସନ୍ତୁଷ୍ଟା,
ଅବଶେଷେ କହିଲେ ସେ ମୋତେ—
"ଯାଅ ପକ୍ଷି, ଯାଅ ବନ୍ଧୁବତ,
ଜଣାଅ ପ୍ରାର୍ଥନା ମୋର
ବୀର ଶିରୋମଣିଙ୍କ ଚରଣେ,
ସେନା ଯେବେ ନ କହିବେ
ହରଲଦେବ ଏ ଜୀବ ତାଙ୍କର ଉଦ୍ଦେଶେ,
ଆଉ କଥା ନ ଶୁଣିବ କହୁ ।"

ବନ—କେଉଁସ୍ଥାନେ ଠାକୁରାଣୀ ରହନ୍ତି ତୁମ୍ଭର ?
କେତେଦୂର ହେବ ଏ ସ୍ଥାନରୁ ?
ପରିଚୟ କି ଅବା ତାଙ୍କର ?
କାହିଁ ଅବା ଶୁଣିଲେ ସେ ପରିଚୟ ମୋର ?

ଦୂତୀ—ଅତି ଅଳ୍ପଦୂର ଏ ସ୍ଥାନରୁ,
କୋଶ ଦୁଇ ହେବ ମାତ୍ର ।
ଆଖଣ୍ଡଳପୁର ନାମେ ଅଛି କ୍ଷୁଦ୍ର ରାଜ୍ୟ
ସେରାଜ୍ୟେ ଜନକ ତାଙ୍କ ଥିଲେ ଅଧିପତି,
ବୀରଚନ୍ଦ୍ର ନୃପତିଙ୍କ ପିତା ରଣଧୀର
ବଧିଲେ ସଂଗ୍ରାମେ ତାଙ୍କୁ,
ରାଜ୍ୟ ସହ ହରିଲେ ସମ୍ପଦ,
ସେ କାଳରେ ଠାକୁରାଣୀ ଅତି କ୍ଷୁଦ୍ର ଶିଶୁ
ବର୍ଷାନ୍ତର ହେଲା ହୋଇ ଅଛନ୍ତି ଯୁବତୀ ;
ଆବାଲ୍ୟରୁ ଏହି ଦୃଢ଼ ସଙ୍କଳ୍ପ ମାନସେ—
ବୀରଶ୍ରେଷ୍ଠ ବୁଝିବେ ଯାହାଙ୍କୁ,

ତାଙ୍କ ପଦେ ଅର୍ପିବେ ଜୀବନ ।
ଦାସ ଦାସୀମାନେ ଅମ୍ଭେ
ଭ୍ରମିଅଛୁଁ ଏ ମାଲବେ ବହୁ ଦେଶେ ଯାଇ,
ଅଣିଅଛୁଁ କେତେ ଶବପେଟ,
ବୁଝି ଅଛୁଁ ନାମ ଧାମ
ଗୁଣ ଗ୍ରାମ କେତେ ବୀରଙ୍କର,
ତହିଁ ମଧ୍ୟେ ଏକା ତୁମ୍ଭେ
ହୋଇଥିଲ ମନୋହତ ଠାକୁରାଣୀଙ୍କର ;
ଏକାନ୍ତ ବାସନା ତାଙ୍କ ହେବେ ବୀରପତ୍ନୀ,
କେବେ ପିତୃ ପ୍ରତିଶୋଧ
ସୌରଭୂମି ଭୂପତିଙ୍କ ହୃତ ରାଜ୍ୟଧନ,
ଅରକ୍ଷ ଉଦ୍ଧାର କରି ଛାଡ଼ିବେ ତାହାଙ୍କୁ ;
ଅତି ସୌଭାଗ୍ୟକୁ ତାଙ୍କ
ତୁମ୍ଭେ ଅଛି ସୌରଭୂମି ବଳ ଅଧିମଣ ;
ଆଗମନ କାଲରୁ ତୁମ୍ଭର,
ଶତାଧିକ ଦାସ ଦାସୀ
ଯଗିଅଛୁଁ ତବ ଶୁଭାଶୁଭକୁ ସର୍ବଦା ।

ବଳ—ଉଦାର ହୃଦୟ ତାଙ୍କ !
ଦେଖି ସେହୁ, ଅତି ପୁଣ୍ୟବତୀ ।

ଦୂତୀ—ଶୁଣ ଆଗେ, ସବୁ ନାହିଁ ବାରତା ମୋହର—
ବୀରଚନ୍ଦ୍ର ଭୂପତିଙ୍କୁ ଜିଣିଥାନ୍ତ ରଣେ,
ଅର୍ପିଥାନ୍ତେ ଠାକୁରାଣୀ ଶ୍ରୀପଦେ ତୁମ୍ଭର
ଜୀବନ ମାନସ ତାଙ୍କ,
ପୁରସ୍କାର ଛଳେ ତେତେବେଳେ ।

ଯେବେ ଯାହା କଲ ଏ ରାଜ୍ୟରେ,
ଛଦ୍ମବେଶେ ପ୍ରହରୀ ଆମ୍ଭର
ରହୁଥାନ୍ତି ସଦା ସଙ୍ଗେ ସଙ୍ଗେ,
ତୁମ୍ଭେ କିନ୍ତୁ ନ ଜାଣ ଏ କଥା,
ଜାଣି ମଧ୍ୟ ନ ପାରନ୍ତ କେବେ ;
କିନ୍ତୁ ଏବେ ବାଧ୍ୟ ହୋଇ ଶିବିରେ ତୁମ୍ଭର
ଆସିଲି ମୁଁ ଜଣାଇବା ପାଇଁ ଏ ସକଳ
ଆଦେଶେ ମୋ ଠାକୁରାଣୀଙ୍କର,
ଜଣାଗଲା ଯହୁଁ ନିଶ୍ଚେ ଘଟିବ ବିପଦ
ସତର୍କ ନ ହେଲେ ତୁମ୍ଭେ ।

କଳ—(ସ୍ୱଗତରେ)
କି ବିପଦ ! କି ବିପଦ ଘଟିବ ଆମ୍ଭର !
କେମନ୍ତେ ସତର୍କ ହେବା !

ଦୂତୀ—ଧୈର୍ଯ୍ୟଧର କହୁଛି ମୁ ସବୁ,
ଆସିଅଛି କହିବା ପାଇଁ ତ ।
ଜାଣ ତୁମ୍ଭେ ? ବୁଝି ଅଛ ?
ସୈନ୍ୟ ସଂଖ୍ୟା କେତେ ଅଛି ଶିବିରେ ତୁମ୍ଭର ?
ଅଷ୍ଟଶତ ଦ୍ୱାବିଂଶତି ମାତ୍ର ।

ଚଳ— ଦଶାଦଶ ଶତେ ଆସି
ପହଞ୍ଚିବେ ସହସ୍ର ସଂଖ୍ୟକ ।

ଦୂତୀ— ବସିଅଛ ନିଶ୍ଚିନ୍ତରେ
ଦଶା ଦଶ ଅନ୍ତ୍ରେ ଆସି ପହଞ୍ଚିବେ ସୈନ୍ୟ ;
ବଡ଼ ଦମ୍ଭ ମାନସେ ତୁମ୍ଭର
ଛଳ ବେଶେ ସ୍ଥାପିଛି ଶିବିର,

ଏବେ ସୁଦ୍ଧା ନ ବୁଝିଲ
କି ଘଟିବ କାଲି କମ୍ପା ଦନାଭୂର ମଧ୍ୟେ,
ଦୂତଗଣ ଅତି ଅକର୍ମଣ୍ୟ ହେବ,
କି ବୁଝନ୍ତି ଅନ୍ତରର ଗୂଢ଼ଗତି ସର୍ବେ ?
ଜାଣନ୍ତି କି ଦୂରେ ଥିବ
ସୈନ୍ୟ ସଂଖ୍ୟା କେତେ ଆଜି ଅରାତି ଶିବିରେ ?

ଗତ ଦୁଇଦନ ମଧ୍ୟେ
ଆସିଛନ୍ତି ସୈନ୍ୟ ଅଗଣନ,
ଚତୁର ସହସ୍ର ସୈନ୍ୟ
ଘେରିଲେଣି ପଶ୍ଚିମ, ଉତ୍ତର, ପୂର୍ବ,
ପର୍ବତର ପଦଦେଶେ ଖୋଳିଣ ଅରାତି
ଦଇଅଛି ପ୍ରକାଣ୍ଡ ଗହ୍ୱର,
ସେ ଗହ୍ୱରେ ଭରି ଗୁଳି ଗୋଳା,
ଫଟାଇବ ଏ ପର୍ବତ ଅଗ୍ନିର ସଂଯୋଗେ,
ପଳାୟନେ କଲେ ଯତ୍ନ
ହାଣିବେ ସେ ଗୋଟି ଗୋଟି ସେହି ଚତୁର୍ଦ୍ଦିଗେ ;
ଦକ୍ଷିଣ ଦଗରେ କେହ ନାହାନ୍ତି ଅଦ୍ୟାପି,
ତାଇ ମଧ୍ୟେ ପହଞ୍ଚିବେ ସୈନ୍ୟ ସେ ଦଗରେ,
ପହଞ୍ଚିଲେ ନାହିଁ ରକ୍ଷା ଆଉ,
ପୁଛ ତୁମ୍ଭ ପ୍ରହରୀଙ୍କୁ, ପୁଛ ଦୂତଗଣେ,
ବୁଝିଥିବେ କେହ ଯେବେ ଶତ୍ରୁର ସଙ୍କେତ ।

(ବଳବନ୍ତବର ବସୁଲ ହାତ ଧରଣ)

ବଳ—ବିଷମ ସଙ୍କଟ ଏବେ !
କେବା ତୁମ୍ଭେ, ଦସ୍ୟୁବନ୍ଧୁ ହିତକାରିଣୀ ବେଶେ

ଦେଖାଦେଲ ଆସି ଏ ଅଧମେ,
କହ ଏବେ ଦସ୍ୟୁବର
କି ଉପାୟେ ଉଦ୍ଧରିବା ଏ ଘୋର ବିପଦୁଁ ।

(କେତେକଜଣ ଦସ୍ୟୁ ଓ ଦୂତଙ୍କର ପ୍ରବେଶ ଓ ଅଭିବାଦନ)

ଦୂତଗଣ ! ଜାଣ କେହି ?
ଚତୁର ସହସ୍ର ସୈନ୍ୟ ଦୁଇଦଳ ମଧ୍ୟେ
ଉପନୀତ ହୋଇଛନ୍ତି ଅସ୍ତ୍ର ଶିବରେ ?
ଘେରିଲେଣି ଚତୁର୍ଦ୍ଦିଗେ,
ପର୍ବତର ପଦଦେଶେ କଲେଣି ଗହ୍ୱର,
ଏସମସ୍ତ ନ ବୁଝିଲ କେହି ଏପର୍ଯ୍ୟନ୍ତ,
କେମନ୍ତେ କି ଦେଖୁଅଛ ?
କର୍ତ୍ତବ୍ୟ ସାଧନେ ବଡ଼ ତ୍ରୁଟି ସମସ୍ତଙ୍କ ।

୧ମ. ଦୂତ—ଦେଖିଅଛୁ କେତେକ ସଙ୍କେତ ଆଜି

୨ୟ ଦୂତ—କାଲିଠାରୁ ହୋଇଅଛି ସନ୍ଦେହ ମୋ ମନେ
କିନ୍ତୁ କହି ନ ଥିଲି ମୁଁ ନ ବୁଝି ନିଶ୍ଚୟ ।

ବଳବନ୍ତ—ଜଣାଗଲା ସବୁ ଏବେ
ନାହିଁ ଏଥି ତିଳେକ ସଂଶୟ,
ଦେବି ! କୃପାକର, କହ କି ଉପାୟେ
ଉଦ୍ଧରିବା ଏ ଘୋର ସଙ୍କଟୁ ?

ରତ୍ନା—ଧୈର୍ଯ୍ୟଧର ନ ହୁଅ ଅସ୍ଥିର,
ଦେବୀ ନୋହେ ମାନବୀ ମୁଁ ଭିଖାରିଣୀ ଦାସୀ ।
ପରାମର୍ଶ ଠାକୁରାଣୀଙ୍କର—
ଅବିଲମ୍ବେ ପଳାଅ ସକଳେ,
ପଳାଅ ଦକ୍ଷିଣମାର୍ଗେ ।

ବଳ—ଦେବୀ କେଡ଼େ ଉଦାର ହୃଦୟା !
ମହତ ଉଦ୍ଦେଶ୍ୟ ତାଙ୍କ,
ଏ ଅଧମ କଦାଚରେ ନୁହଇ ଭାଜନ
ପଦ ସେବନକୁ ତାହାଙ୍କର,
କିନ୍ତୁ ତାଙ୍କ ଅନୁଗ୍ରହେ ହେଲି ଧନ୍ୟ ମୁହିଁ,
କୃତଦାସ ହେବି ଶ୍ରୀ ଚରଣେ,
ଆଜ୍ଞା ତାଙ୍କ ପାଳିବି ନିୟତ,
ପ୍ରହରୀଏ ! ଦୂତଗଣ ! କହ ସମସ୍ତଙ୍କୁ
ହେଉନ୍ତୁ ସଜ୍ଜିତ ସର୍ବେ, ଯିବା ଏହିକ୍ଷଣି ।

ଦୂତଗଣ ଓ ପ୍ରହରୀଗଣ—ଯେ ଆଜ୍ଞା, (ଅଭିବାଦନ ଓ ପ୍ରସ୍ଥାନ)

ବଳ—ଭଙ୍ଗିଲା ବାସନା ଆଜି
ଠାକୁରାଣୀଙ୍କର ତବ ଶ୍ରୀପଦ ଦର୍ଶନ ।

ଦୂତା—ଠାକୁରାଣୀଙ୍କର ଗୃହ ପଡ଼ିବ ମାର୍ଗରେ,
ଇଚ୍ଛା ତାଙ୍କ ଯିବେ ତୁମ୍ଭ ସଙ୍ଗେ ;
ସଙ୍ଗେ ରହି ଏହି ସୌରଭୂମେ,
ପୁନଃ ଆକ୍ରମଣ ହେଲୁ କରିବେ ଉଦ୍ୟୋଗ ।

ବଳ—ଏତେ ଭାଗ୍ୟ ହେବ ମୋର !
ଯିବେ ଦେବୀ ଦୟାମୟୀ ଅଧମ ସଙ୍ଗରେ !
ଆଜ୍ଞା ତାଙ୍କ ଶିରୋଧାର୍ଯ୍ୟ ମମ ।

ଦୂତା—କର ତେବେ ଏହି ତୁମ୍ଭେ—
ସୈନ୍ୟଗଣେ ଦିଅ ଆଜ୍ଞା ପଳାନ୍ତୁ ସତ୍ୱରେ,
ନ ରହିବେ ଅପେକ୍ଷା ତୁମ୍ଭର,
ଅଳ୍ପମଧ୍ୟେ ଯିବେ ଗୃହ ସୌରଭୂମିପାରେ,
ଜଣ ଗୃହ ପାଶ ମାତ୍ର ସେନା ଅଶ୍ୱାରୋହୀ,

ଆସ ତୁମ୍ଭେ ସଙ୍ଗରେ ମୋହର ;
ଶତାଧିକ ଅଶ୍ୱାରୋହୀ ଅଛନ୍ତି ଅମର,
ବୈରିଙ୍କ ମାର୍ଗରେ ସର୍ବେ କରିବା ଗମନ,
ଗାରଭଙ୍ଗପୁରେ ଯାଇ ଭେଟିବା ସୈନ୍ୟଙ୍କୁ ।

ବଳ—ଆଚ୍ଛା ତେବେ (ବସୁଳ ଜାତ)
ତୁମ୍ଭେ ଯିବ କିପ୍ରକାରେ ?

ରକ୍ଷା—ଆଣ ଏକ ଅଶ୍ୱ ମୋ ନିମନ୍ତେ
(ଦଳପତିମାନଙ୍କ ପ୍ରବେଶ ଓ ଅଭିବାଦନ)

ବଳ—ଦଳପତିଗଣ ସର୍ବେ !
ବୁଝିଅଛ ବିପଦ ଅବସ୍ଥା ;
ସୈନ୍ୟ ନେଇ ଯାଅ ସର୍ବେ ଅତିବ ସତର୍କେ,
ଦକ୍ଷିଣ ମାର୍ଗରେ ଯିବ,
ଗାରଭଙ୍ଗପୁରେ ଯାଇ ଗ୍ରହିବ ଅମ୍ଭଙ୍କୁ,
ସ୍ୱର୍ଗ ଅଛି ନୋହୁଣ ପ୍ରହାର.
ସୌରଭୂମି ରାଜ୍ୟ ସୀମା ଯିବ ଅତିକ୍ରମି,
ଜନମ୍ଭ କଲେକ ଏଥି ଜାଣିବ ନିଶ୍ଚୟ
ଅରାତି ହସ୍ତରେ ପଡ଼ି ହରାଇବ ପ୍ରାଣ ;
ଯାଉଅଛୁଁ ଅମ୍ଭେ ଆଗ ହୋଇ,
ଅମ୍ଭ ସଙ୍ଗେ ପାଞ୍ଚଜଣ ଆସ ଅଶ୍ୱାରୋହୀ,
ଆଣ ଏକ ଅଶ୍ୱ ବାଛି ଏହାଙ୍କ ନିମନ୍ତେ ।

ଦଳପତିଗଣ—ଯଥା ଆଜ୍ଞା, (ଅଭିବାଦନ ଓ ପ୍ରସ୍ଥାନ)

ବଳ— ବୁଦ୍ଧି ଶୁଦ୍ଧି ସବୁ ମୋର ଲୁପ୍ତ ଏ ସମୟେ,
ଦେବୀ ତୁମ୍ଭେ ଦୟାମୟୀ,
ତୁମ୍ଭେ ମୋର ଏତେବେଳ ବଗ୍ରର,
କ୍ଷମାକର, ଅଶେଷ ଗୁଣକରେ, (ବଳଙ୍କର ପ୍ରସ୍ଥାନ)

ଲତା— (ସ୍ୱଗତ)

ମନ୍ଦ ବୁଦ୍ଧି ନିର୍ବୋଧ ପାପିଷ୍ଠ
ସେନାପତି ପଦେ ଯୋଗ୍ୟ ଏଷ୍ଟ !
ପ୍ରାଣ ଭୀତି ଏତେ ଯାହାଙ୍କର
ରାଜ୍ୟ କିମ୍ପା କରିବେ ସେ ଆପର୍ଣ୍ଣା ତାଙ୍କର ;
ଲୁଚି ଲୁଚି ଗୋପନେ ଗୋପନେ—

(ବୀର ବେଶେ ବଳବନ୍ତ ଏବ ୨ । ୩ ଣ ଅଶ୍ୱାରୋହୀଙ୍କର ପ୍ରବେଶ)

ବଳ— ଆସ ଏବେ ଅଶ୍ୱଗଣ ଭଗ୍ନ ଦ୍ୱାର ଦେଖିଣ ।

(ସମସ୍ତଙ୍କର ପ୍ରସ୍ଥାନ, ପଟକ୍ଷେପ)

---

## ତୃତୀୟ ଦୃଶ୍ୟ—ପ୍ରାନ୍ତର ।

ଜଣେ ସ୍ତ୍ରୀଲୋକବେଶୀ ବ୍ୟକ୍ତିର ପ୍ରବେଶ ।

ଆଗତ ବ୍ୟକ୍ତି—(ସଶଙ୍କିତ ଭାବେ ଚତୁର୍ଦ୍ଦିଗକୁ ଚାହିଁ ଚାହିଁ)

ପଳେଇଲାଣି, ପଳେଇଲାଣି, ବଳବନ୍ତ ଭାଗେ, ଆମକୁ ଆଉ ଧନ ଧରିବାକୁ ପଡ଼ିଲା ନାହିଁ, ଆମ ନା ଶୁଣି ଭାଗେ । ଅମ୍ଭର ଭାରି କପାଳ । ରାଜ୍ୟଟା ତ ଅଧେ ମିଳିବ, କେମିତିଟା ମିଳୁ ବା ନ ମିଳୁ (ନେପଥ୍ୟ ଶବ୍ଦ ଶୁଣି ଚମକି ଉଠି) ଉଃ ! ବାପ ! କିଏ ଆଉ କିଏ ଦୁଆରେ ଲୁଚି ରହିଛି ! (କମ୍ପିତ କଳେବରରେ) ଉଃ ଉଏ ଭଏ ! ଏଁ ! ଏଁ ! ମୁଁ କିଛି ଜାଣେ ନା, କୁଆଡ଼େ ଯିବି !, ମତେ ରକ୍ଷା କର ! ତ୍ରାହି ଭଗବାନ୍ ।

(ଦ୍ରୁତବେଗେ ପଳାୟନ)

(କେତେକଜଣ ସୈନିକଙ୍କର ପ୍ରବେଶ ଏବ ସୈନିକମାନଙ୍କର ସଶଙ୍କିତଭାବେ ଚତୁର୍ଦ୍ଦିଗକୁ ଚାହିଁ ଚାହିଁ ଶତ୍ରୁ ସୈନ୍ୟ ଲୁକ୍କାୟିତ ସ୍ଥାନ ଅଙ୍ଗ ଲଗି ଦ୍ୱାର ଉଣ୍ଡିତ କରିଣ । ନେପଥ୍ୟେ ପଦଧ୍ୱନି ଶବ୍ଦ ଶୁଣି କମ୍ପିତ କଳେବରରେ ପଳାୟନୋଦ୍ୟମ । ଜଣେ ଦୂତଙ୍କର ପ୍ରବେଶ)

କୃଷକ—(ସ୍ୱଗତ) ବାଁଚା ଗଲା ପୁଣି କଥା ! ବଳବନ୍ତ ସିଂହ ସୈନ୍ୟ ସାମନ୍ତ ସେନା ବସି ରହିଲା ଯେ ତା ଉପରେ ବଳ ଠିକଣ ଲେଖି ଏତେବେଳ ଯାଏ ଫଳ ପକାଇ ପାରିଲେ ନାହିଁ । କପାଳ ଯୋଗକୁ ସେ ପଳାଇଲା, ପୁଣି ଏସବୁଡ଼ାକ କଥା କୋଉଠୁ ଆଇଲେ ।

ସୈନିକ ଦଳପତି—(କୃଷକ ନିକଟକୁ ଯାଇ ମୃଦୁ ସ୍ୱରରେ) ବଳବନ୍ତ ସିଂହ ଖବର କିଛି ଜାଣ ?

କୃଷକ—ବଳବନ୍ତ ସୈନ୍ୟ ସାମନ୍ତ ସେନା ଚାଲିଗଲେଣି ।

ସୈନିକଗଣ—ଏଁ ! ଚାଲିଗଲେଣି ! ସତ କହୁଛ ? ଠିକ୍ ବୁଝିଛ ?

କୃଷକ—ଠିକ୍ କହୁଛି, ନିଜେ ଆଖିରେ ଦେଖିଛି । କଣ ହେଲା କେଜାଣି, ସଞ୍ଜ ଭିତରେ ତ ଯେ ସୁଅଟେ ସବୁ ସେନା ଚାଲିଗଲେ । ସେ ଚାଲିଯିବାରୁ ଆମ୍ଭେ ଅଳି ବଳବାଡ଼ ଦେଖିବାକୁ ବାହାରିଲୁଁ । ନଇଲେ ତ ଘର ଭିତରେ ଲୁଚି ରହିଥିଲୁଁ ।

ସୈନିକ ଦଳପତି—ତେବେ ଠିକ୍, ଫେର୍ ଗିଅ ।

ସୈନିକଗଣ—(ଖୁସି ମୂର୍ତ୍ତିରେ) ଫେର୍‌ଗିଅ ମାରେ ମାରେ ଯାକ୍‌ଡ଼ୋ ଯାକ୍‌ଡ଼ୋ ଏଧର ଗିଅ ଏଧର ଟିଅ ଯାକ୍‌ଡ଼ୋ ଯାକ୍‌ଡ଼ୋ ।

(ଖୁସି ମୂର୍ତ୍ତିରେ ସର୍ବ ପଦ ବକ୍ଷପେ ପ୍ରସ୍ଥାନ)

କୃଷକ—(ହାସ୍ୟବଦନ) ଭଲ ଚାଲିଲେ ବଳବନ୍ତ ସିଂହକୁ ଧରିବେ । ବାଘୁଣୀ କଡ଼େଇ କହେ "ମାଲେ ମା ମୁ ଯୋଉ ଜାଲରେ ବସେଁ ସେ ଜାଲ ଭାଙ୍ଗିପଡ଼େ" । ମା କହେ "ହଁରେ ପୁଅ ତୋ ହାତ ଚୋଡ଼କୁ ଜଣା ପଡ଼ୁଛି" । ଛଡ଼ ଯାଉଚ ହିଁଠୁ ବଳ ବାହୁଡ଼ ଅନେଇ ଅସେଁ । (ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ—ଜୟପୁର କାରାଗାର ।

(କାରଗୃହ ମଧ୍ୟରେ ବଳବନ୍ତ ସିଂହ ଓ ତାହାଙ୍କର ଅନୁଚରବର୍ଗ କାରାବଦ୍ଧ । ପ୍ରହରୀଗଣ ଦଣ୍ଡାୟମାନ),

ବଳ—ପାପିୟସୀ ମାୟାବୀ ରାକ୍ଷସୀ
ଭୁଲାଇଲା ମାୟା ଜାଲେ !
ଏ ଦୁର୍ଦ୍ଦଶା ଥିଲା ଅଦୃଷ୍ଟ କର୍ମେ !
କାହାରେ କହିବୁଁ ଏହା !
ନିଜ ବୁଦ୍ଧି ଦୋଷେ ଏ ଦୁର୍ଭାଗ୍ୟ !
ସୈନ୍ୟବୃନ୍ଦ ଗଲେ ମରି,
ଏ ବାରତା କେବା ଦେବ ତାଙ୍କୁ !

୧ମ ପ୍ରହରୀ—ବକ୍ ବକ୍ ମତ କରୋ ।

୨ୟ ପ୍ରହରୀ—ଚୁପ୍ ହୋକେ ବୈଠେ ରହୋ ।

୩ୟ ପ୍ରହରୀ—ଫେର ବକ୍ ବକ୍ କରେଗେତ ବେଲ ଲଗାଏଙ୍ଗେ ।

(ପଟକ୍ଷେପ)



# ପଞ୍ଚମ ଅଭିନୟ ।

## ପ୍ରଥମ ଦୃଶ୍ୟ—ରାଜ ଦରବାର ।

(ରାଜା ଶରତଚନ୍ଦ୍ର ଦେବ, ସୁବଳ ଓ ରାଜ ମିତ୍ରମାନଙ୍କର ଯଥା ଯଥା ସ୍ଥାନରେ ଉପବେଶନ । ଏକପାର୍ଶ୍ୱେ ପ୍ରହରୀଗଣ ବେଷ୍ଟିତ ଶୃଙ୍ଖଳବଦ୍ଧ ଗୋବର୍ଦ୍ଧନ, ଗୋବର୍ଦ୍ଧନଙ୍କର ସ୍ତ୍ରୀଗଣ, ପତ୍ନୀ ଓ ପୁତ୍ରବଧୂଗଣ ଦଣ୍ଡାୟମାନ, ଓ ଅନ୍ୟ ପାର୍ଶ୍ୱେ ଅଭିଯୋକ୍ତାମାନେ ଦଣ୍ଡାୟମାନ ।)

୧ମ ଅଭି—ମହାରାଜ ! ସ୍ୱୟଂ ଧର୍ମ ଅବତାର !
ଆଜ୍ଞା ହେଉ ମନ୍ତ୍ରିମାନଙ୍କ
ଶୁଣିବାରେ କରନ୍ତୁ ଗୁହାର ;—
ଏକମାତ୍ର ପୁତ୍ର ମମ ହୃଦୟ ରତନ,
ନାହିଁ ଜନ୍ମ ଅବଧିରୁ ଛାଡ଼ିନ୍ତି ସେ ସବୁ,
ମୃଗୟାରେ ଯାଇ କାହିଁ ହେଲା ନିରୁଦ୍ଦେଶ ;
କାନ୍ଦି କାନ୍ଦି ମୋ ବାଳକୁ
ପିତା ମାତା ବୃଦ୍ଧ ବୃଦ୍ଧା ହେଲୁଁ ଯଦି ଅନ୍ଧ,
ଅକାରଣେ ଦୋଷିଲୁଁ ତା ସଙ୍ଗୀଗଣେ କେତେ,
ବ୍ୟସ୍ତ ରହି କଲୁଁ ବୃଥା ଦୋଷୁଁ ଅଛିଯାଏ ;
ଏତେ ଦିନେ ହେଲା ଭ୍ରମ ଦୂର
ଏତେ ଦିନେ ବୁଝିଲି ମୁଁ ହେଁ ହେଁ ହେଁ ହେଁ (ରୋଦନ)
ମହାରାଜ ! ଏତେ ଦିନେ ଜାଣିଲି ମୁଁ
ଦସ୍ୟୁ ହସ୍ତେ ମଲା ମୋ ତନୟ ହେଁ ହେଁ ହେଁ ହେଁ (ରୋଦନ)
ଦୁଷ୍ଟ ଦସ୍ୟୁ (ରୋଦନ) ଦୁଷ୍ଟ ଡାକେ
ହାଣିଲା ମୋ ବକ୍ଷେ (ରୋଦନ) ବଜ୍ର ।

୧ମ ପାତ୍ର—(୨ୟ ଅଭିଯୋକ୍ତାଙ୍କ ପ୍ରତି)
ତୁମ୍ଭର କି ଅଭିଯୋଗ ?

୧ମ ଅନୁ—ମହାରାଜ ! ସମ ଦୁଃଖି ଏ ଅଧୀନ,
ବନ୍ଧୁପୁର ନିବାସ ମୋହର,
ଶୁଣିଲି ଏ ଦସ୍ୟୁ ଦଳପତି
ସଦଳରେ ପଡ଼ିଅଛି ଶତ୍ରୁଙ୍କ ହସ୍ତରେ,
ସେକାରଣେ ଆସିଲି ମୁଁ
ଜଣାଇବି ଦୁଃଖ ଶ୍ରୀଛାମୁରେ ;
ଦସ୍ୟୁଦଳ ଅଧିପତି ଏ ଦୁଷ୍ଟ ପାପିଷ୍ଠ
ଦଳ ବଳ ସେନା ସଙ୍ଗେ
ନିବିଡ଼ ଅରଣ୍ୟ ମଧ୍ୟେ କରଇ ବସତି,
ପଥେ ଲୋକ ଗଲେ ଯତ୍ନଆଳ,
ପଥିକ ଦେଖିଲେ ଆସି ଧରେ ଦଳବଳେ,
ଧରି ତାକୁ କରେ ହତ,
ହତ କରି ହରେ ତାର ସମସ୍ତ ସମ୍ପଦ,
ପୁତ୍ର ମମ ଅକସ୍ମାତେ
ପଡ଼ିଲା ପଥରେ ଏହି ମହାପାପୀ ହସ୍ତେ,
ବଧିଅଛି ଏ ଅଧମ ପୁତ୍ରକୁ ମୋହର ।

(ଦ୍ୱିତୀୟ ବିହର ପ୍ରବେଶ)

୨ୟ ଅନୁ—ମହାରାଜ୍ ! ଶୁଣାଯାଉ ଅଧୀନ ଗୁହାରି ;—
ଦକ୍ଷିଣେ ନିବାସ ମମ,
ବ୍ୟବସାୟୀ ସୌଭାଗ୍ୟଶ୍ରୀ,
ହୀରା ମୋତି ମାଣିକ୍ୟ ମୁଁ କରେଁ ବିକା କିଣା ;
ପୁତ୍ର ମମ କେବେ କେବେ
ବ୍ୟବସାୟ ଉପଲକ୍ଷେ
ଭ୍ରମେ ଆସି ଦେଶ ବିଦେଶରେ ;

ଦୁର୍ଜନଙ୍କୁ ଥରେ ଯଦି
ଏ ଦୁଷ୍ଟ ପିଶାଚ ହସ୍ତେ ପଡ଼ିଲା ପଥରେ,
ରାକ୍ଷସ ଏ, ବଧିଅଛୁ ଶାଳମ୍ମ ମୋହର ।
ମହାରାଜ ! ଯାଣି ହେଲେ
ମୂଢ଼, ମହାପାପୀ, ପିଶାଚ, ରାକ୍ଷସ,
ନରହନ୍ତା, ପୁତ୍ରହନ୍ତା ପାମରକୁ
ବଧନ୍ତୁ ମୁଁ ନିଜ ହସ୍ତେ ଛମୁଙ୍କ ସାକ୍ଷାତେ,
ପଛେ ହେଲେ ରାଜଦଣ୍ଡେ ହରାଇ ଜୀବନ
ପାଶୋରନ୍ତୁ ପୁତ୍ର ଶୋକ ତାପ ।

ଦୁର୍ଜନ ( ସ୍ୱଗତ )
ଅପରାଧୀ ! ଏ ତ ପିତା ଗୋବର୍ଦ୍ଧନ !
ଏ ତ ସର୍ବେ ଭ୍ରାତା ଭ୍ରାତୃବଧୂଗଣ !
ମାତା ମଧ୍ୟ ଅଛନ୍ତି ସଙ୍ଗରେ—!
ତ ବଧାନ ହେବ ଏମାନଙ୍କ !
ଦେଖାଯାଉ ! ଇଚ୍ଛା ପ୍ରଭୁଙ୍କର ।

ରାଜ ( ସକ୍ରୋଧେ )
ଅପରାଧୀ !
ଶୁଣିଲୁ ତ ଅଭିଯୋଗ ସବୁ ସାକ୍ଷାତରେ ?

ଗୋବ—ମହାରାଜ ଶୁଣିଲି ସମସ୍ତ ।
ରାଜ—ସତ୍ୟ କି ଏ ମିଥ୍ୟା ସବୁ ?
ଗୋବ—ମହାରାଜ ସବୁ ସତ୍ୟ ।
ରାଜ—ପିଶାଚ ରାକ୍ଷସ ମୂଢ଼,
ବୃଦ୍ଧ ହେଲୁ, କେଶ ଶୁଭ୍ର, ଦନ୍ତ ବଗଲିତ,
ଏକାଳେ ତୁ ଧର୍ମ ହିଂସା ଛାଡ଼ ରେ ପାମର

ପ୍ରବୃତ୍ତ ହୋଇଲୁ ଯାଇ ନରହଂସା କାର୍ଯ୍ୟେ !
ଅଜ୍ଞାନ ତୁ, ଶୁଣ ହୋ ପାଠକ
ଚକ୍ଷୁସ୍ଥିର, କମ୍ପିତ ହୃଦୟ ମୋର !
ପାପିଷ୍ଠ ପାମର ! କେତେ ନର କଲୁ ବଧ
କେ କହିବ ସଂଖ୍ୟା ତାର !
ଏ ସମାନ ଅପରାଧେ
କେଉଁ ଦଣ୍ଡ ଦେବ ହୋ ବିଧାନ !

୧ମ ପାତ୍ର—ପ୍ରାଣଦଣ୍ଡ ।

ବୀର—ଜଣେ ବଧି ପ୍ରାଣଦଣ୍ଡ,
ବଧିଲା ଅସଂଖ୍ୟ ଏହି,
ମନଃତୃପ୍ତି ନ ହେଲା ଅମ୍ଭର ।
ଥାନ୍ତା କିଛି ତହୁଁ ବଳି !

୧ମ ପାତ୍ର—ଅପରାଧୀ ! ଅଛି କିଛି ବକ୍ତବ୍ୟ ତୁମ୍ଭର ?
ପ୍ରାଣଦଣ୍ଡ ହେଲା ଆଜ୍ଞା,
ଜଣାଇବ ଯାହା ବେଗେ ଜଣାଅ ଛାମୁରେ,
ଆଜିଠାରୁ ସାତ ଦିନ ରହିବ ଜୀବନେ,
ତତ୍ପରେ ଚଣ୍ଡାଳଗଣ ନେବେ ଶୂଳଯୋଗେ,
ବସାଇଣ ଶୂଳେ ତହୁଁ
ପ୍ରାଣଦଣ୍ଡ କରିବେ ବିଧାନ ।

ଗୋବ—ଅପରାଧୀ, ଅପରାଧେ ହେଲା ଦଣ୍ଡ ଆଜ୍ଞା,
ଏ ବିଷୟେ କିଛିମାତ୍ର ନାହିଁ ମୋ ବକ୍ତବ୍ୟ ।
ଆନ କିଛି ଅଛି ବାଞ୍ଛା
ଜଣାଇବ ଶ୍ରୀଛାମୁରେ,
କିନ୍ତୁ ଆଜି ନୋହେ ସେ ସମୟ,

ଛାମୁରେ ପ୍ରାର୍ଥନା ମୋର
ଶୂଳିଯେବେ ଦରଶନ ଦେବେ ମୋତେ ଥରେ,
ପ୍ରକାଶି ମୁଁ ଅଭିଳାଷ କହିବି ଶୂଳରେ ।

ବୀର—ଅଚ୍ଛା

୧ମ ପାତ୍ର—ଆଜ୍ଞା ହେଲା ଛାମୁଙ୍କର
ଶୂଳିଯେବେ ଦରଶନ ମିଳିବ ଛାମୁଙ୍କୁ ।
ମହାରାଜ ! ଅନ୍ୟ ସର୍ବେ ?

ବୀର—ସମସ୍ତେ ଯେ ସମ ଅପରାଧୀ,
ସମସ୍ତଙ୍କୁ ସେହି ଦଣ୍ଡ ।

୧ମ ପାତ୍ର—ଆଜ୍ଞା ହେଲା ସମସ୍ତଙ୍କୁ ପ୍ରାଣଦଣ୍ଡ
ଯାହାର ଯେ ବାଞ୍ଛା ଶୀଘ୍ରେ ଜଣାଅ ଛାମୁରେ ।

( କ୍ଷଣକାଳ ନୀରବ )

( ପ୍ରହରୀ ପ୍ରତି ) ଘେନିଯାଅ ସମସ୍ତଙ୍କୁ
ଛାଡ଼ି ନେଇ କାରାଗୃହେ ।

( ପ୍ରହରୀମାନଙ୍କ ଦ୍ୱାରା ଧୃତ ଅପରାଧୀଗଣଙ୍କର ଓ ଅଭିଯୋଗକାରୀମାନଙ୍କର ପ୍ରସ୍ଥାନ )

ଦୁର୍ଜନ—( ସ୍ୱଗତ )
ପ୍ରାଣଦଣ୍ଡ ଆଜ୍ଞା ହେଲା ସବଂଶେ ପିତାଙ୍କୁ ।
କେବା ହତ ! କେବା ହନ୍ତା !
କେବା ଏଥି ଅପରାଧୀ !
କି ପ୍ରକାରେ କେବା ଅପରାଧୀ !
କି ସାଧ୍ୟ ବୁଝିବେ ରାଜା ?
ବିଧାତାର ବିଡ଼ମ୍ବନା—
ଦୋଷାଦୋଷ ବିଚାରଣ ମାନବ ସମାଜେ,
ନ୍ୟାୟ ବିଚାରଣ ଅର୍ପେ ମାନବ ହସ୍ତରେ,
ଅର୍ପିଅଛି ଯାହା ତୁଳାଦଣ୍ଡ ;

ମୋହଘନ ଅଜ୍ଞାନ ଘରଣୀ,
ଅନ୍ତରାଳେ ନାହିଁ ଯା ଶକତି,
ଧର ଦୋଷ, ପର ଗୁଣ, ପର ହୃଦ ଭାବ,
କେମନ୍ତେ ବୁଝିବ ସେହୁ ?
କେମନ୍ତେ ସେ ନ୍ୟାୟାନ୍ୟାୟ କରିବ ବିଚାର ?
ଦେବତାଙ୍କ ମତି ଭ୍ରାନ୍ତ ଏହି ।
ଦେଖାଯାଉ, ଇଚ୍ଛା ଯତ୍ନବର,
ଭାଗ୍ୟେ ଯାହା ଥିବ ତାହା ନ ଖଣ୍ଡିବେ କେହୁ ।
ନ କରିବ ଅବଜ୍ଞା ମୁଁ କର୍ତ୍ତବ୍ୟ ମୋହର ।

(ପ୍ରକାଶ୍ୟେ) ମହାରାଜ ! ଯଥେଚ୍ଛ ଶାସ୍ତି ଦେବ ।

ରାଜ—ଆସ ଆସ, ଆସ ବତ୍ସ (ଉଠାଇ ଓ ଆଲିଙ୍ଗନ)
ବଡ଼ ତୁଷ୍ଟ ହେଲି ଶୁଣି,
ଶୁଣିଅଛି ମୋ ଅଙ୍ଗେ,,, ବିନା ଯୁଦ୍ଧେ,
କେବଳ କୌଶଳେ ଅଣି ବାନ୍ଧିଲ ଅରାତି ;
ଧନ୍ୟ ହେଲି କୌଶଳେ ତୁମ୍ଭର,
ପାପିଷ୍ଠ ପାମର ଦୁଷ୍ଟ
ଦସ୍ୟୁପଣେ କଲା ମୋର ରାଜ୍ୟ ଛାରଖାର,
ପ୍ରେମାସ୍ପଦ ବତ୍ସ ତୁମ୍ଭେ,
ଯୋଗ୍ୟ ଶାସ୍ତି କର ତା ବିଧାନ ।
ଶୁଣିବାକୁ ବାଞ୍ଛା ମମ କେମନ୍ତେ ପାପିଷ୍ଠ
ପଡ଼ିଲା କବଳେ ତବ,
କେମନ୍ତେ ବା କହେ ଆସି ପଶିଲା ବନ୍ଧନେ ?

ଦୁର୍ଜନ—ମହାରାଜ ! ପ୍ରଭୁଙ୍କ ଚରଣ ସରୁ .
ସବୁ ଏଥି ପ୍ରଭୁଙ୍କ କୃପାରୁ ।

ନୃପ—ଭଗବାନ ଜଗତଜନତା ।
ରାଜ୍ୟ ରକ୍ଷା ହେଲା ତୁମ୍ଭଲାଗି ।
ଅସ ବତ୍ସ ନସ ଏଥି ( ଅଗ୍ରନ ସୁଦର୍ଶନ )
ଏ ଯୁବତୀ- ( ସୁନନ୍ଦ ଦେଖାଇ ଦେଇ )
ତାଙ୍କ ସହ ତୁଅ ପରିଚୟ (ସୁବଳ ଓ ଦୁର୍ଜନଙ୍କର ପରସ୍ପର ସମ୍ଭାଷଣ)
ହେବେ ଜ୍ୟେଷ୍ଠ ଜାମାତା ଆମ୍ଭର,
ତୁମ୍ଭେ ହେବ କନିଷ୍ଠ ଜାମାତା,
ଆମ୍ଭ ଅନ୍ତେ ପୈତୃକଭୂମି କରି ଦୁଇ ଖଣ୍ଡ,
ଦୁଇ ଅଂଶେ ହେବ ଦୁଇ ରାଜା,
ଚିର ସ୍ନେହେ ଦୋହେଁ ମିଶି କରିବ ରାଜତ୍ୱ,
ପରସ୍ପର ଶୁଭାଶୁଭେ ରଖିବ ସୁଦୃଷ୍ଟି,
ଶତ୍ରୁ ଦରଶନେ ଦୋହେଁ
ମିଳାଇଣ ଦୁଇ ବଳ ବଧିବ ଅରାତି,
ଦୁଇ ହୋଇ ସର୍ବ କର୍ମେ ହେବ ଏକ ମନ,
ଭିନ୍ନତା ନ ବୁଝିବେ ରାଜ୍ୟ ପ୍ରଜାବର୍ଗ,
ଏତିକ ପ୍ରାର୍ଥନା ମମ ।
ଶୁଭ ଲଗ୍ନେ କନ୍ୟା ଦାନ କରିବା ସତ୍ୱର ।

ଦୁର୍ଜନ—କ୍ଷମାକର ମହାରାଜ !
ଅଛି ଏକ ବ୍ରତ ମୋର,
ସେ ବ୍ରତ ନ ହେଲେ ପୂର୍ଣ୍ଣ
ପୁରସ୍କାର ଗ୍ରହଣେ ମୁଁ ନ ହେବ ସକ୍ଷମ ।

ନୃପ—ଅଛି ବତ୍ସ ! ବାଞ୍ଛାନ୍ତୁ ସେହ ଯୁକ୍ତି,
କରନ୍ତୁ କରୁଣା ପ୍ରଭୁ
ବ୍ରତ ତୁମ୍ଭ ହେଉ ସିଦ୍ଧ,

ପୂର୍ଣ୍ଣ ହେଉ କାମନା ତାଙ୍କର,
ଏକ ଭକ୍ତ ଏକ କର୍ମେ
ଦୁହିଁ ଜଣେ ଦୁଇ ଯେମା କରିବା ପ୍ରଦାନ ।
(୨୮୦) ଜନ୍ୟା ମମ ବଢ଼ୁ ଭାଗ୍ୟବତୀ
ବଢ଼ୁ ଶକ୍ତି ପୂର୍ବ ଜନ୍ମ ତପସ୍ୟା ତାହାର,
ସତ୍ୟ ଜପ ମଳେ ମଙ୍ଗଳ ଶ୍ରଦ୍ଧା ବଢ଼ୁ ଚନ୍ଦ୍ରା,
ଶକ୍ତି ଯନ୍ତ୍ର କର୍ମକୁ ତାହାର
ସେ ସତ୍ୟ ପୂରଣେ ହେଲେ ପରମ ସମ୍ମତ ।

——

## ଦ୍ୱିତୀୟ ଦୃଶ୍ୟ—ରାଜ ପଥ ।

(ଚଣ୍ଡାଳଗଣଙ୍କର ପ୍ରବେଶ ଓ ଅଙ୍ଗେ ନୃତ୍ୟ)

ଚଣ୍ଡାଳଗଣ—ହୋଗିଆ, ହୋଗିଆ, ହୋଗିଆ, ହୋଗିଆ,
ହୋଗିଆ ହୁକୁମ୍ ସବ୍ ହୋଇ,
ଲେ ଦମାଦମ୍ ଲଗ୍ ଯାଇ,
ହବ୍ ହୋଇ ମିଲ୍ ହେ ବାଣ୍ଟଲେଡ଼,
ହାହା ହାହା ହାହା ହାହା
ଅବ ଜଣା ହୋନେହେ ଭୋର—
ହୋ'ହୋ ହୋଃହୋ ହୋହୋ ହୋହୋ
ଅବ ଜଣା ହୋନେସେ ଭୋର
ଲେଅଁ ବସ୍ତା ମଣ୍ଡଳେ,
ସନ୍ଦେଶ, ମଣ୍ଡା ଲଡ଼ୁ ହୁଁ-ହୁଁ—
( ଚନ୍ଦ୍ରହାସଙ୍କ ମଧ୍ୟେ ରାଜର ସଙ୍କେତ । )
କେତେକ ଜଣ—ବାର ବାର ଅଦ୍ମି
ଅବଶିଷ୍ଟ—ଚୌଦ ଚୌଦ ଅଦ୍ମି

ଧୂମକେତୁ—ଏକେଦ୍ରମ୍ ଶୂଲଦମ୍ ଲଗେଦମ୍ ଲଗେଦମ୍

ହୋହୋ ହୋହୋ ହୋହୋ ହୋହୋ

୧ମ ଚଣ୍ଡୀ—ବଢ଼ି ଢୋଲ

୨ୟ ଚଣ୍ଡୀ—ଶୂଲ ଅଧଦା

୩ୟ ଚଣ୍ଡୀ—ଝିଗୋଲ ଜଗୋଲ

୧ମ ଚଣ୍ଡୀ—ଚଲେ ଚଲେ ଚଲେ ଚଲେ (ସମସ୍ତଙ୍କର ପ୍ରସ୍ଥାନ)

(ଦୁର୍ଜ୍ଜନସିଂହ ଏବଂ ଦେବୀଦୁର୍ଗ ବାସବାସୀମାନଙ୍କର ପ୍ରବେଶ)

ଦୁର୍ଜ୍ଜନ—ନିବାସ ନିମନ୍ତେ ଆଜି

ରକ୍ଷିଅଛୁ ସୁସଜ୍ଜିତ ଗୃହ ଏ ନଗରେ,

ଅଭିମାନ ଲଭିବାକୁ ହେବ ସେହ ସ୍ଥାନେ,

ହୋଇଅଛ ସର୍ବେ ପଥଶ୍ରାନ୍ତ

ଶ୍ରମ ଦୂରକର ସେ ଭବନେ ।

ଉଠି କାଲି ପ୍ରତ୍ୟୁଷରେ,

ପ୍ରାତଃକୃତ୍ୟ କରି ସମାପନ

ଅପେକ୍ଷା କରିବେ ମୋତେ,

ଦେଖିବି ମୁଁ ଯାଇ ସେହିସ୍ଥଳେ,

ମୋ ସଙ୍ଗତେ ଗଲେ ସର୍ବେ

ଯେମନ୍ତେ ମୋଚନ ହେବ ଏ ଦଶା ତୁମ୍ଭର,

କରିବ ଯତନ ତାର ।

୧ମ ବାସୀ—ମାତା ତୁମ୍ଭେ, କରିଅଛ ପ୍ରାଣଦାନ,

ଆଜ୍ଞା ତବ ଶିରୋଧାର୍ଯ୍ୟ । (ସମସ୍ତଙ୍କର ପ୍ରସ୍ଥାନ)

(ସିଦ୍ଧାଧର, ଶ୍ରୀଧର, ପ୍ରମଦା ଓ ହେମମାଳୀଙ୍କର ପ୍ରବେଶ)

ଶ୍ରୀଧର—ଏହି ତ ସେ ସୌରଭୂମି, ଏହି ତ ନଗର,

ରାଜଗୃହ ଏହି ତ ଅଦୂରେ ।

କାହାକୁ ପୁଛିବା ଏଥି !

ହେ କହବ ପୁଷ୍ପଗଣ ବାର୍ତ୍ତା !
ହେ କହବ ସୁବଳ ସୁଦାମ କଥା !

ଗଦାଧର—ଅସ୍ଥିରନ୍ତି କିଏ ଏଡ଼,
ତାକୁ ଚାଙ୍କୁ ପଗୁରବା,
ଶୁଣିଥିବେ ଭାଲେ କିଛି ଜଣାଯିବ ସବୁ ।

( ଜଣେ କୈବର୍ତ୍ତର ମତ୍ସ୍ୟ ହସ୍ତେ ପ୍ରବେଶ )

କୈବ—ଯାହାହଉ ଭଲ ମାଛଟାଏ ଧରା ପଡ଼ିଛି । ମନ୍ତ୍ରୀମା ଦେଖିଲେ ଖୁସି ହୋଇଯିବେ । ଯେମିତି ଖୋଜା ସେମିତି ମିଳିଛି । ଆଜି ଶାଢ଼ୀ ଖଣ୍ଡେ ମୁଣ୍ଡରେ ବାନ୍ଧିବ ବାନ୍ଧିବ, ମଦନା ମା ଶାଢ଼ୀ ଦେଖିଲେ ତ ଅଉ ଯା ଯା—

ଶ୍ରୀଧର—ହୋ ଭାଇ ! ହୋ ଭାଇ !

କୈବ—କିଏ ଗୋଟା ଡାକୁଛି ହୋ ! କାହାକୁ ଡାକୁଛି !

( ପଶ୍ଚାତ୍ ଅବଲୋକନ )

ଶ୍ରୀଧର—ଟିକିଏ ଶୁଣିଲାର ଭାଇ !

କୈବ—( ଦରକ୍ତ ରବେ ) କଣ ହୋ ! କାହିଁକି ଡ଼ାକୁଛ ? ( ସ୍ୱଗତ ) ହେଁ—ଭାଇ ! କିଏ ଗୋଟା ଅମର ଭାଇ ! ଆମେ ମନ୍ତ୍ରୀମାଙ୍କ ମଣୋହିକୁ ମାଛ ନେଉଚୁଁ, ଗୋଟା ଭାଇ ଭାଇ ଡାକ ପକେଇଛି, କୌଣ ଦହେବେ ଏମିତି ଭାଇ ଡ଼ାକଥିଲି ?

ଶ୍ରୀଧର—ଶୁଣ ଶୁଣ, ଟିକିଏ ଅନୁଗ୍ରହ କରି ଶୁଣ ।

କୈବ—କଣ ଶୁଣିବା ହେ ? ଏ ମାଛ ଖାଇ ପାରିବ ନାହିଁ, ଦାନ୍ତ ଭାଙ୍ଗିଯିବ ।

ଶ୍ରୀଧର—ନାହିଁ, ମାଛ ଲୋଡ଼ ନାହିଁ, ଅଉ କିଛି କଥା ଅଛି, ଟିକିଏ ଦୟା କରି ଶୁଣନ୍ତୁ ।

ଢୈବ—( ସ୍ୱଗତ ) ଦେଖିଲଣି ହୋ, ଶୁଣିବାକୁ ଫେର ଆମେ ସ୍ୱାଙ୍ଗ କରିକି ଯିବୁଁ ( ପ୍ରକାଶ୍ୟେ ) କଣ ? ତେବେ ଏଠି ଆସି ବସୁ ଯା । (ଶ୍ରୀଧର ପ୍ରଭୃତିଙ୍କର ଅନୁସରଣ)

ଶ୍ରୀଧର—ଭାଇ ତୁମ୍ଭ ଘର ଏହି ନଗର ମଧ୍ୟରେ ?

ଢୈବ—କାହିଁକି ? ଆମ ଘର ଏଇଠି ହିଁ, ଆମେ ଛମୁଙ୍କ ମଣୋହିକୁ ମାଛ ଦଉଁ, କଣ କଥା ଅଛି କୁହ ଆମେ ଯିବୁଁ ।

ଶ୍ରୀଧର—କାଲି ଲୁଅକେ ଶୂଳ କାହାକୁ ଦିଆଯିବ କିଛି ଶୁଣିଛ ?

ଢୈବ—ହେଁଃ—ଆମେ ଶୁଣିନଉଁ ? କାଲି ତ ଏଠି ଏଜାଠି ଡଳେ, ଚାଲିଷ୍ଟା ନା ଚଉଦଷ୍ଟା ଶୂଳ ଖାଇବେ—ଗୋଟାଏ ଉକେ-
ଇତ ଦଳ, ଏ ହେ ପାଗଲା ବୁଢ଼ା ତାଙ୍କ ସରଦାର ।
ଅଉ କଣ ଲୁହ, ଅଙ୍କେ ଯିବୁଁ, ଢ଼ିଲୁଇ ହଉଛି ।

ଶ୍ରୀଧର—ସେମାନଙ୍କର ନା ଗାଁ କିଛି କହି ପାରିବ ?

ଢୈବ—ନା ଗାଁ ଏତେ କିଏ ବୁଝିଛି ହୋ ? ଅମ୍ଭେ ଯାଉଛୁଁ (ପ୍ରସ୍ଥାନ)

ଶ୍ରୀଧର—ବୁଝାଗଲା କାହିଁ କିଛି,
କେହୁ ବୋଲେ ଦସ୍ୟୁ ଏକ ଦଳ,
କେହୁ ବୋଲେ ବୃଦ୍ଧ ଏକ ଜଣ,
କେହୁ ବୋଲେ ଯୁବା ତିନ ଜଣ,
କେହୁ ଅବା ବୋଲେ ପୁଣି
ରମଣୀ ଗୃହସ୍ଥ ଆଉ ଯୁବା ଗୃହ ଜଣ,
ସ୍ଥିର କିଛି ନ ମିଳଇ କେ ଯିବ ଶୂଳକୁ ।

ଗଦାଧର—ବାଚା ରେ ସୁବଳ ! ବାବା ସୁଦାମ ରେ
କାହିଁଗଲ ହୋହେଁ ଏ କାଳରେ ?
କାହିଁ ଯାଇ ହେଲ ରେ ନଶ୍ଚିନ୍ତ ?
ବୃଦ୍ଧ ପିତାମାତାଙ୍କର କି ହେବ ଅବସ୍ଥା
ନ ପଡ଼ିଲା ମନେ କି ତୁମ୍ଭର ?

ସ୍ନେହଣୀ—ବାପ ମୋର ! କଥି ମୋର !
କାହିଁ ଯାଇ ହେଲ ରେ ଅଦୃଶ୍ୟା ?

ପ୍ରମଦା—ଦଣ୍ଡେ ନ ଦେଖିଲେ ବାପ
ହେଉଥିଲ ଲଣା ଦୋହେଁ ଯାକ,
କେମନ୍ତେ ବଞ୍ଚିବ କାହିଁ ପାସୋର ସେ ସବୁ ?

ବେଦଣୀ—ଭୁଲ ନେବେ ଭୁଲ ଭାବ ସୁବଳ ସୁଦାମ,
ତୁମ୍ଭ ବଳା ମାତା ଦୋହେଁ ଅକର୍ଣ୍ଣୀ ତୁମ୍ଭର ।

ବେଦୁଣୀ ଓ ପ୍ରମଦା—( ରୋଦନ କର କର )
ତୁଦନଧ ! ଅଞ୍ଚଳ ଧଞ୍ଚାଲି ହେଁ ହେଁ ହେଁ ହେଁ (ରୋଦନ)
ଏ ଢଳ୍ପରେ ଗଲହଞ୍ଚ ହେଁ ହେଁ ହେଁ ହେଁ (ରୋଦନ)

ଶ୍ରୀଧର—ଶୁଭ ଅଛି ସାଧୁମାନେ କହନ୍ତି ଯତନ
ମିଳେ ଯେବେ ଭାଗ୍ୟବଳେ ସୁଜ ଦରଶନ ।

( ସମସ୍ତଙ୍କର ପ୍ରସ୍ଥାନ )

( ନେହଲୁଣୀମାନଙ୍କର ପ୍ରବେଶ )

ଗୀତ

(ସୁର) ଶୂଳଅପଦାକୁ ବେଗେଁ ଯିବା ସଜନ
(ଅନ୍ତ) ଯାଉଛି ରକ୍ଷିବା ସାନ୍ତ୍ର ନ ହେଉଁ ଭଜନ ।
(ଅନ୍ଧେ) ଗରଢବା ଗର୍ ଗର୍ ଗର୍
(ଅନ୍ଧେ) ପାଣିହେବା ଝର୍ ଝର୍ ଝର୍
(ଛିଦ) ଝକ୍ମକ୍ ଝକ୍ମକ୍ ଝକ୍ମକ୍ ଝକ୍ମକ୍ ଝଲସେବା ଅବନୀ ।
(ଢାଲ) ଶୁଲରେ ବସିଲେ ଦୋଷୀଗଣ
(ଅବେ) ଆଖିବା ତାଙ୍କ ବେଶ ଭୂଷଣ
(ସୁର) ରଣଝଣ ରଣଝଣ ରଣଝଣ ରଣଝଣ ଝଙ୍କାରିବା ମେଦନୀ ।
(ସୁନି) ମରନେ ମରବେ ଅମ୍ଭ ପ୍ରତିବେଶୀ ରମଣୀ ।

---

## ତୃତୀୟ ଦୃଶ୍ୟ—ବଧଭୂମି

( ଏଠ ସବୁ ଜଳ୍ଳ ଚଣ୍ଡାଳଗଣ ଦଣ୍ଡାୟମାନ । ଦର୍ଶକଗଣ ଓ ଅନୁଯୋକ୍ତାଗଣ ଉପସ୍ଥିତ । ବୀରଚନ୍ଦ୍ରଦେବ, ସୁବଳ, ଦୁର୍ଜ୍ଜୟସିଂହ, ମନ୍ତ୍ରୀ ଓ ପ୍ରହରୀମାନଙ୍କର ପ୍ରବେଶ । )

ବୀର—ମନ୍ତ୍ରିବର ! ଦୋଷୀଗଣେ ଆଣାଅ ଏଥାନ,
 କି କର୍ତ୍ତବ୍ୟ ଅଛି ତାଙ୍କ କହିବା ଶ୍ରବଣ ।

ମନ୍ତ୍ରୀ—ଯଥା ଆଜ୍ଞା ମହାରାଜ
(ପ୍ରହରୀ ପ୍ରତି) ଯାଅ ସର୍ବେ ଅବିଳମ୍ବେ ଆଣ ଦୋଷୀଗଣେ ।
(ପ୍ରହରୀମାନଙ୍କର ପ୍ରସ୍ଥାନ)

୧ମ ଦର୍ଶକ—ମହାରାଜ ପ୍ରଣତ ଶ୍ରୀପଦେ,
 ଦୂରରୁ ଆସିଅଛୁଁ ସର୍ବେ ଅମ୍ଭେମାନେ
 ଶୁଣି ଏହି ଦସ୍ୟୁଦଳ ପ୍ରାଣଦଣ୍ଡ ବାର୍ତ୍ତା,
 ମମ ପୁତ୍ର, ତାଙ୍କ ଭ୍ରାତା, ତାଙ୍କ ଭ୍ରାତୃସୁତ,
 କେତେ କାହା ଆତ୍ମୀୟ ସ୍ୱଜନ,
 ସମସ୍ତଙ୍କୁ ଏ ପିଶାଚ
 ବଧିଅଛି ଧନ ଘୋରବନେ ।
 ଶୁଣିଲେ ତାକୁ ଦେଖିବାକୁ
 ଆସିଛନ୍ତି ସମସ୍ତେ ଏ ସ୍ଥଳେ ।
 ( ପ୍ରହରୀମାନଙ୍କ ସହ ଶୃଙ୍ଖଳବଦ୍ଧ ଗୋବର୍ଦ୍ଧନ ପ୍ରଭୃତିଙ୍କର ପ୍ରବେଶ )

ବୀର—କହ ଏବେ ଦୁଷ୍ଟ ତୁମ୍ଭେ
 କି କର୍ତ୍ତବ୍ୟ ଅଛି ଏ କାଳରେ ?

ଗୋବ—ମହାରାଜ ଶୁଣନ୍ତୁ କର୍ତ୍ତବ୍ୟ ମମ—
 ନାହିଁ କହିବ ପ୍ରାଣ ଭିକ୍ଷା ଶ୍ରୀପଦେ ପ୍ରାର୍ଥନା,
 ଯେଣୁ ମୁହିଁ ଘୋର ଅପରାଧୀ,
 ପତ୍ନୀ ପୁତ୍ର ପୁତ୍ରବଧୂ,
 ସମସ୍ତଙ୍କୁ କରିଅଛି ସେ ପାପେ ଜଡ଼ିତ,

ଏହା ଏ ପାପିଷ୍ଠ ଦୋଷେ
ନର ବଧେ ସର୍ବେ ଅପରାଧୀ ;
ବଧ ଆଜ୍ଞା ଅବଧେୟ ନୁହଇ କାହାର ।
ବୀର—ଦୟାମାଗି କହଥାନ୍ତ ହେଲେ ପ୍ରାଣ ରକ୍ଷା
ଏ ମହାପାତକେ କିପାଁ ବଳାଇଲ ମତି ?
ଗୋବ—ମହାରାଜ ଜଣାଇବ ସେ ବୃତ୍ତାନ୍ତ—
ଉଦର ପୂରଣେ ଚିନ୍ତା ନ ଥିଲା ମୋହର ;
କରନ୍ତୁ ଶ୍ରବଣ ପ୍ରଭୁ—
ଶାଲକୁଣ୍ଡ ନାମେ ଏକ ଅଛି କ୍ଷୁଦ୍ର ରାଜ୍ୟ, ..
ଜଣାଥିବ ମନ୍ତ୍ରୀମାନଙ୍କୁ
ନରସିଂହ ଥିଲେ ତହିଁ ରାଜା,
ଗୋବର୍ଦ୍ଧନ ନାମେ ଏକ—
ବୀର—ଜାଣେ ସତ୍ୟ, ଗୋବର୍ଦ୍ଧନ ଥିଲେ ତାଙ୍କ ମନ୍ତ୍ରୀ
ବଡ଼ ସାଧୁ, ପ୍ରଭୁଭକ୍ତ, ସୁଦକ୍ଷ ଚତୁର
ଗୋବ—ମହାରାଜ ଏ ପାପିଷ୍ଠ ସେହି ଗୋବର୍ଦ୍ଧନ,
ସେହି ମନ୍ତ୍ରୀ ଏ ପିଶାଚ ଦୁଷ୍ଟ ଦସ୍ୟୁ,
ଶୁଣିଥିବେ ଯେ ପ୍ରକାରେ
ପାପିଷ୍ଠ ଯୁବକ ଏକ
ଯେହୁ ଆଜି ରାଜା ସେ ନଗରେ—
ନ ଧରବ ତା ନାମ ବଦନେ—
ଅତଥ୍ୟ ଛଳନା କରି
ରାଜଦ୍ୱାରେ କଲା ଅସି ଅତଥ୍ୟ ପ୍ରମାଣ,
ଅବଶେଷେ, ମୋ ତହୁଁ ପିଶାଚ ହେତୁ,
ବିଶ୍ୱାସଘାତକ, ମୂଢ଼, ଚଣ୍ଡାଳ, ପାପିଷ୍ଠ

ପିଶାଚ ବୃତ୍ତିରେ କଲା ରାଜାଙ୍କୁ ନିଧନ
ପାଟରାଣୀ ହେଲେ ସହମୃତା,
ରତ୍ନମାଳୀ ନାମେ ଏକ ଅତି କ୍ଷୁଦ୍ର କନ୍ୟା
କୋଳେ ଥିଲା ରାଣୀଙ୍କର,
ସେହି ତାକୁ ଗୋବର୍ଦ୍ଧନ ପଳାଇଲା ବନେ ।

ରାଜ—ଶୁଣିଅଛୁ ସେ ସମସ୍ତ
ଦେଶଗ୍ଲାନି କୁଳଗ୍ଲାନି ପାପିଷ୍ଠ ପାମର
ଜଘନ୍ୟ ବୃତ୍ତିରେ କଲା ରାଜ୍ୟ ଅଧିକାର,
କାହିଁ ଏବେ ରତ୍ନମାଳୀ ?

ଗୋବ—କରନ୍ତୁ ଶ୍ରବଣ ଛମୁ—
ସେହିଦିନୁ ମହାରାଜ,
ପଞ୍ଚକ ନାମକୁ ମୋର ସହିଲା ମନ୍ତ୍ରିତ୍ୱ,
ସେହିଦିନୁ ବନେ ଅଛି
ପଞ୍ଚବନବାସ ବ୍ରତ କରି ମୁଁ ପାଳନ,
ପତ୍ନୀ ପୁତ୍ର ସମସ୍ତଙ୍କୁ
କରି ମୁଁ ସେ ବ୍ରତେ ଦୀକ୍ଷିତ,
ସମସ୍ତଙ୍କୁ ଦେଇ ଆଜ୍ଞା ଦେଖିଲେ ପଞ୍ଚକ,
ମାରନ୍ତାକୁ ଯାର ଯେ ପ୍ରକାରେ,
ମାର ତା ସମ୍ପଦ ହର ଦଣ୍ଡ ମୋହଠାରେ,
କିନ୍ତୁ ମହାରାଜ ! ଜାଣିବେ ନିଶ୍ଚୟ ଏହା,
ଉଠେ ମାତ୍ର ସେ ପାପ ସମ୍ପଦ
ଉଦର ପୂରଣେ କେବେ କରି ନାହିଁ ବ୍ୟୟ ।

ରାଜ—କାହିଁ କେବେ ସେ ସମ୍ପଦ ?

ଗୋବ—କହୁଛୁ ମୁଁ ଶୁଣନ୍ତୁ ମହିମା—
କନ୍ୟାଟି ପାଳିଲି ତହିଁ ଅତିବ ଯତନେ,

ଶିଖାଇଲ ଲେଖାପଢ଼ା,
ଅବିଳମ୍ବେ ନାନାଶାସ୍ତ୍ରେ ହେଲା ସେ ପଣ୍ଡିତା,
ଶିଳ୍ପକଳା, ବାଦ୍ୟବରେ ସୁଦକ୍ଷା ସେହୁ,
କାଞ୍ଚନ ବର୍ଦ୍ଧନେ ପଦ୍ମ
ନ ହ୍ରସ୍ୱେ କେବେ ଜ୍ୟୋତି ତାର,
ସର୍ବବିଧ ସକଳଗୁଣ ପୂର୍ଣ୍ଣ ତାହାଠାରେ,
ଅସାମାନ୍ୟ ବୁଦ୍ଧିର ବିବେକ !
ଅସୀମ ସାହସ ! ଆଶ୍ଚର୍ଯ୍ୟ କୌଶଳ !
ପରାକ୍ରମ ! କି କହିବ ମହାରାଜ !
ବାଳିକା ବୟସେ ତାର
ବଳ ବଳ ମଲ୍ଲଙ୍କୁ ସେ କଲା ଧରାଶାୟୀ,
ଅସ୍ତ୍ର ଶସ୍ତ୍ର ଚାଳନାରେ କେବା ଲକ୍ଷ ଭେଦେ
ଅଦ୍ୱିତୀୟା କହିଲେ ସେ ନ ହେବ ଅତ୍ୟୁକ୍ତି,
ବାଞ୍ଛା ଥିଲା ଅରଣ୍ୟରେ
ନବ ରାଜ୍ୟ କରନ୍ତି ସ୍ଥାପନ,
ରାଣୀ ତାଙ୍କୁ କରନ୍ତି ସେ ସାହାଯ୍ୟ,
ରତ୍ନପୁର ରଖିଥାନ୍ତି ରାଜ୍ୟଟିର ନାମ,
ସେହି ଅର୍ଥ କର ବ୍ୟୟ
କରିଥାନ୍ତି ଯୁଦ୍ଧ ଆୟୋଜନ,
ସେହି ରାଣୀ ସେହି କନ୍ୟା ସେହି ରତ୍ନମାଳୀ
ସୈନ୍ୟ ସେନା ଶାଳକୁଞ୍ଜେ କରନ୍ତା ଗମନ,
ପିଶାଚ ପାମର ଧୂର୍ତ୍ତ
ପିତୃହନ୍ତା ପାପିଷ୍ଠକୁ ଜାଣି ସଂଶେ,
ଚିତ୍ରରାଜ୍ୟ ଶାଳକୁଞ୍ଜ କରନ୍ତା ଉଦ୍ଧାର,

ପିତୃଙ୍କ ପାଇଁ ପ୍ରତିଶୋଧ କରନ୍ତା ଗ୍ରହଣ,
ଶୁଣି ଯାରେ ଚନ୍ଦ୍ରଦନ୍ତା ନିଧନ ବାରତା
ତୁଷ୍ଟ କରାଇଥାନ୍ତା ଏହି ବାଣିଜ ପତ୍ତନ,
କେନ୍ଦ୍ର ମହାରାଜ ?
କଲ୍ୟାଣ ଶବଦ ମାତ୍ର ମନୁଷ୍ୟ ଅସ୍ତ୍ରରେ,
କଲ୍ୟାଣ ପୂରଣ ଶକ୍ତି ବିଧାତାଙ୍କ ହସ୍ତେ ।
କର୍ମଦୋଷେ ଯାନ୍ତି କ୍ରମେ ମହା ଦସ୍ୟୁ ଏକ
ହରେ ନେଇ ଗୁହେ ତାଙ୍କୁ କଲୁ ଅଭ୍ୟର୍ଥନା,
ବିଧାତାଙ୍କ କୃତ୍ୟ ସବୁ,
ବନ୍ଧ୍ୟପଣେ ବଳରେ ଯେ ଅମ୍ଭ ସମସ୍ତଙ୍କୁ,
ସର୍ବ ଅସ୍ତ୍ର ସର୍ବ ଶକ୍ତି ସମସ୍ତ କୌଶଳ
ଶୁଣ ରାଣୀ ଇନ୍ଦୁମାଲୀ,
ଇନ୍ଦୁମାଲୀ ଯେମାନୁ ଯେ ହରଣ ପାପିଷ୍ଟ
ପଳାଇଲା ଜଣାଇବେ,
ନ ମିଳିଲା ତାହିଁ ଆଉ ଯେମାର ସନ୍ଧାନ,
ବ୍ୟର୍ଥ ହେଲା ଦମ୍ଭ ମୋର,
ବ୍ୟର୍ଥ ହେଲା ସେହି ଭଳି ସମସ୍ତ ଭରସା,
ପୁନର୍ବାର ଫେରିଲା ମୋ ମତି,
ଅଗତ ପାତକ ପୁଣ ହେଲା ଅନୁତପ୍ତ,
ପାପର ପ୍ରାୟଶ୍ଚିତ୍ତ ହେତୁ
ବାଞ୍ଛା ହେଲା ସ୍ୱଜନଦଣ୍ଡେ,
ତେଣୁ ଅଛି ନଜେ ନଜେ
ଧରିଦେଲି ଅମ୍ଭଙ୍କର ବନ୍ଧୁଜନ ହସ୍ତେ,
ତା ନ ହେଲେ କଦାପି ଧରନ୍ତେ ଯେ ମୋତେ ।

ଶାଳ—ଜାଣିଲି ମୁ ପ୍ରଭୁଭକ୍ତି ଅଟଳ ତୁମ୍ଭର,
ହୃଦୟ ଉଦାର ତବ,
ଅନ୍ୟ ବନ୍ଧୁ କୌଶଳରେ,
ସେନଥାନ୍ତି ପ୍ରତିରୋଧ,
ଏ କାର୍ଯ୍ୟଗୁଡ଼ିକ କିନ୍ତୁ ଅତ୍ୟନ୍ତ ଜଘନ୍ୟ ।

ଚୋର—ଅତ୍ୟନ୍ତ ଜଘନ୍ୟ ସତ୍ୟ ଅତ୍ୟନ୍ତ ଜଘନ୍ୟ,
ସବଂଶରେ ପ୍ରାଣଦଣ୍ଡ ଆଜ୍ଞା ଦେଉ ମୋତେ,
ଏହି ମୋର ପ୍ରଥମ ପ୍ରାର୍ଥନା ।
ଦ୍ୱିତୀୟ ସ୍ଥଳରେ ମୋର ଅନ୍ତିମ ପ୍ରାର୍ଥନା—
ମନ୍ତ୍ରୀମାଙ୍କ ଯାଇ ମିଶି ଯିବେ ରତ୍ନପୁରେ,
ତଥା ମମ ଶଯ୍ୟାଗୃହେ
ଦେଖିବେ ପ୍ରବେଶ ମାତ୍ରେ ପ୍ରକାଣ୍ଡ ପ୍ରସ୍ତରଖଣ୍ଡ,
ଶ୍ୱେତବର୍ଣ୍ଣ ସ୍ଫଟିକ ଉଜ୍ଜ୍ୱଳ,
ରତ୍ନ ନାମ ତା ପର୍ଶେ ଅଙ୍କିତ :
ସଯତନେ ଉଠାଇବେ ସେ ପ୍ରସ୍ତରଖଣ୍ଡ,
ଗର୍ଭେ ତହିଁ ପଞ୍ଚ କୋଟି ଅଛି ସ୍ୱର୍ଣ୍ଣ ମୁଦ୍ରା,
ଅଣିବେ ସମସ୍ତ ତହୁଁ ;
ସେହି ଅର୍ଥ କରି ବ୍ୟୟ
ଶାଳକୁଞ୍ଜ ଆକ୍ରମଣ କରିବେ ଶୀଘ୍ର,
ପ୍ରଭୁହନ୍ତା ପାପିଷ୍ଠକୁ ବିନାଶି ମୋହର,
ପ୍ରେତପୁରେ କରିବେ ପ୍ରେରଣ,
ପ୍ରେତପୁରେ ହେବ ତୁଷ୍ଟ କରି ମୁ ଦର୍ଶନ ।

ଶାର—ଉଦାର ହୃଦୟ ତବ ଅତିବ ଉଦାର !

ଚୋର—ମହାରାଜ କରନ୍ତୁ ଶ୍ରବଣ
ତୃତୀୟ ପ୍ରାର୍ଥନା ମୋର ଅଛି ଏ ସ୍ଥଳରେ—

ସୁନ୍ଦରୀଙ୍କ ରତ୍ନମାଳୀ କନ୍ୟାଙ୍କୁ ଯେ ଦୁଷ୍ଟ,
ଦେଖିଲି ମୁଁ ଏଥି ତାକୁ କାଲି କାରାଗୃହେ ;
ଏକାକୀ ସେ ଅଛି ତହିଁ,
ବଧିଅଛି କର୍ଣ୍ଣେ ପାପୀ ରତ୍ନକୁ ମୋହନ,
ପୁନଃ କରୁ ବହୁ ଅପରାଧ
ହୋଇଅଛି ଅତି କାରାରୁଦ୍ଧ,
ତସ୍କର ସମସ୍ତେ ତାର
ଏ ଉତ୍ସବେ ରଖିବେ ମରଣ ।
ଏହୁ ଭଳି ଅନ୍ତିମ ପ୍ରାର୍ଥନା ମମ
ନ କରିବେ କ୍ଷମା ଅବହେଳା ।

ଶର—କି ଏ ସେ ପାପିଷ୍ଠ ଅଛି ଅମ୍ଭ କାରାଗୃହେ ?
ମନ୍ତ୍ରୀବର କିଏ ସେହୁ ?
ଅଣାଅ ଏକ୍ଷଣି ତାକୁ ।

ମନ୍ତ୍ରୀ—ଅଛି ଏକ ମହାରାଜ !
ନ ଜାଣନ୍ତି କ୍ଷମୁ ସେ ବୃତ୍ତାନ୍ତ,
ନଗର ଭ୍ରମଣେ ଦିନେ କରୁ ମୁଁ ଦର୍ଶନ
ଛଦ୍ମବେଶୀ ଦସ୍ୟୁ ବୋଲି ହେଲା ମୋ ସଂଶୟ,
ତେଣୁ ତାକୁ କାରାଗୃହେ କଲି ମୁଁ ଆବଦ୍ଧ ।

ଶର—ପାପିଷ୍ଠ ପାମର ସେହୁ
ରତ୍ନମାଳୀ ବଧେ ତାର ହେବ ପ୍ରାଣଦଣ୍ଡ,
ଅଣାଅ ଏକ୍ଷଣି ତାକୁ,
ଏହି ବୃକ୍ଷ ଶାଖାତଳେ
ଫାଶେ ତାକୁ ଦିଅ ଶୂଳ ।

ମନ୍ତ୍ରୀ—( ପ୍ରହରୀମାନଙ୍କ ପ୍ରତି )
ଯାଅ ବେଗେ ଅଣ ସେହୁ କାରାରୁଦ୍ଧେ.

( ପ୍ରହରୀମାନଙ୍କର ପ୍ରସ୍ଥାନ )

ବୀର—( ସ୍ୱଗତ ) ବିଷମ ସମସ୍ୟା ଏହି !
ଗୋବର୍ଦ୍ଧନ ମନ୍ତ୍ରୀ ଏଥି କୃତାନ୍ତ ସାମାନ୍ୟ !

ଅନୁଯୋଗୀଗଣ—ମହାରାଜ୍ ଏ ବୃଦ୍ଧ ପିଶାଚେ
ଆଜ୍ଞା ଦେଉ ପ୍ରାଣଦଣ୍ଡ ।

ବୀର—ବୃଦ୍ଧ ଗୋବର୍ଦ୍ଧନ !
ପ୍ରାଣଦଣ୍ଡେ ତବ ବାଞ୍ଛା ନାହିଁ ଥିଲେ ମୋର,
କିନ୍ତୁ, ଅନୁଯୋଗୀଗଣ ନ ହେବେ ସନ୍ତୁଷ୍ଟ,
ଅପବାଦ ମୋ ହେବ ପଛେ,
ଅର୍ଥଲୋଭେ ଛାଡ଼ି ଦେଲେ ରାଜା ଦସ୍ୟୁଗଣେ ।

ଗୋବ—ମହାରାଜ୍ ! ପ୍ରାଣଦଣ୍ଡ ପ୍ରାର୍ଥନା ମୋହର ।

ଦୁର୍ଜନ—ମହାରାଜ୍ ! ଆଜ୍ଞା ଦେଲେ
କର୍ତ୍ତବ୍ୟ ମୋ ଥିଲ କହି ।

ବୀର—କହ ବତ୍ସ ! ଅଛି ଯାହା କର୍ତ୍ତବ୍ୟ ତୁମ୍ଭର ।

ଦୁର୍ଜନ—ଜିଜ୍ଞାସ୍ୟ ମୋ ଅନୁଯୋଗୀଗଣେ,
ଅହେ ଅନୁଯୋଗୀଗଣ !
ତୁମ୍ଭେ ସର୍ବେ ପୃଷ୍ଠ ପୋଷେ କେହ ଶୋକାକୁଳ,
କେହ ଅବା ଲଜ୍ଜ ପୋଷେ,
କେହବା ହରାଇ ଅନ୍ୟ ଆତ୍ମୀୟ ସ୍ୱଜନ,
ତାଙ୍କ ହେତୁ ଅତୀବ କାତର ।
ଜିଜ୍ଞାସ୍ୟ ମୋ ଏହି ସମସ୍ତଙ୍କୁ ;—
କହ ମୋତେ କିସ ତୁମ୍ଭ ପ୍ରୟୋଜନ ଏବେ ?
ପ୍ରୟୋଜନ ଇଚ୍ଛା ପୁଣ ଆତ୍ମୀୟ ସ୍ୱଜନେ ?
ଅବା ତୁମ୍ଭ ପ୍ରୟୋଜନ
ଦେଖିବ ସବଂଶେ ଏହି ବୃଦ୍ଧର ବିନାଶ ?

ସମସ୍ତେ—ପ୍ରଜ୍ୱଳିତ ଚିତା ପ୍ରତି ଅଗ୍ରସର ହେଲେ ।
ଦୁର୍ଜନ—ମହାରାଜ ! ସମସ୍ତଙ୍କୁ ଦେବ ମୁ ଫେରାଇ
ଆଜ୍ଞା ଦେଉ ପ୍ରାଣ ଭିକ୍ଷା ସବଂଶେ ଏହାଙ୍କ,
( ଦୁର୍ଜନର ପ୍ରସ୍ଥାନ )
ରାଜ—( ସ୍ୱଗତେ )
ତଥା ଜଗ ! ସମସ୍ତଙ୍କୁ ଦେବେ ସେ ଫେରାଇ !
ମୃତ ବ୍ୟକ୍ତିଗଣେ ଅଣିଦେବେ ସେ ଫେରଇ !
ବୁଝି ନ ପାରଇ କିଛି ଏ ଗୂଢ଼ ରହସ୍ୟ !
ଅଗମ୍ୟ ମୋ ବୁଦ୍ଧି ଏଥି !
କିଏ ସେ ଏ ମହାପୁରୁଷ !
ଦେବ କି ମାନବ ଏହି !
ଅଦ୍ଭୁତ ଦର୍ଶନେ ହେଲେ ଚକ୍ଷୁ ସ୍ଥିର ମୋର !
ଅଜ୍ଞାନ ମୁଁ, ନ ଚିହ୍ନିଲି,
କଷ୍ଟ ଦେବତା କେହୁ କରନ୍ତି ଛଳନା !
(ବେଶ ଦୁର୍ଗବାସୀମାନଙ୍କ ସହ ଦୁର୍ଜନର ପ୍ରବେଶ)
ଅନ୍ୟଯୋଦ୍ଧାଗଣ—ବାବା ! ବତ୍ସ ! ଭାଇ ! ବନ୍ଧୋ !
ଦୁର୍ଜନ—ଦେଖ, ଦେଖ, କିଏ ତାହା ପ୍ରତି ଏଥିମଧ୍ୟେ,
ଦେବା ବାହା ଅଗ୍ନିରୁ ସ୍ୱଜନ,
ମହାରାଜ ! ଆଜ୍ଞା ଦେଉ ଏବେ ପ୍ରାଣରକ୍ଷା ।
ପୁନଃ ଏହୁ ଅଶ୍ରୁଚନ୍ଦ୍ର ଅମୂଲ୍ୟ ପ୍ରହସ
ଅଛି । ଶୁଣିଲେ ଅବଶ୍ୟ ହସ୍ତ ।
ଅଜ୍ଞାନିର ଏ ଯନ୍ତ୍ରଣା ତାଙ୍କୁ !
ସୁବୋଧ ସୁଶୀଳ ସେହୁ ସରଳ ପ୍ରକୃତି,
ସତ୍ୟନିଷ୍ଠ ସାଧୁ ଶିଷ୍ଟ ଉଦାରହୃଦୟ !
ନୂତନ ସେ ଛଦ୍ମବେଶୀ ତାଙ୍କୁ,

ମୁକ୍ତନ୍ତୁ ସେ ଅପରାଧୀ,
ଜଳନ୍ତୁ ସେ ଜଦାଃଘରେ
ରତ୍ନମାଳୀ ବଧ ଦୋଷେ ଦୋଷୀ,
ଜଣେ ମୁହିଁ ସାକ୍ଷୀ ଏ ବିଷୟେ,
ରତ୍ନମାଳୀ ମର ନାହିଁ,
ରତ୍ନମାଳୀ ଅଦ୍ୟାପି ଜୀବିତା,
ରତ୍ନମାଳୀ ସାକ୍ଷାତେ ସମ୍ମୁଖ ।

ବୀର—ସ୍ୱପନ କି ସତ୍ୟ ଏ ସକଳ !

ଦୁର୍ଜନ—ମହାରାଜ ! ସବୁ ସତ୍ୟ
ଭ୍ରମ ଦୂର କରନ୍ତୁ ମହିମା !
ତୃଷା ପୂର୍ଣ୍ଣ ହେଉ ମୋର !
( ଛଦ୍ମ ବିପ୍ର ବେଶ ପରିତ୍ୟାଗପୂର୍ବକ ରତ୍ନମାଳୀବେଶେ ଅବସ୍ଥାନ )
ଏ ଅଭାଗୀ ସେହି ରତ୍ନମାଳୀ
ଅର୍ପିଅଛି ମନଃପ୍ରାଣ ଶ୍ରୀପଦେ ତାହାର ।
( ପ୍ରହରୀମାନଙ୍କ ସହ ସୁବଳଙ୍କ ସୁଦାମଙ୍କର ପ୍ରବେଶ । )

ସୁବଳ---ଭାଇ ରେ ସୁଦାମ !

ସୁଦାମ----ଭାଇ ରେ ସୁବଳ ମୋର !
କାହିଁଥିଲୁ ଏତେଦିନ ?
ଏତେଦିନେ ପ୍ରାଣ ଆଜି ହେଲାରେ ଶୀତଳ ।

ଶ୍ରୀଧର ଗଦାଧର ପ୍ରଭୃତି—ବାପ ! ନିଧି ! ସୁବଳ ! ସୁଦାମ ମୋର !

ଗୋବର୍ଦ୍ଧନ ପ୍ରଭୃତି—ମା ! ରତ୍ନ ! ରତ୍ନ ! ରତ୍ନମାଳୀ ! ଜୀବନଧନ !

ବୀର—କି ଆଶ୍ଚର୍ଯ୍ୟ ! କି ଆଶ୍ଚର୍ଯ୍ୟ !
କି ଦୁର୍ଘଟନ ! କି ଘଟଣା !
କ୍ଷୁଦ୍ର ବୁଦ୍ଧି ! ନ ବୁଝିଲି କିଛି ମୁହିଁ !

ମା ରତ୍ନମାଳୀ ! କର କୃପା କହ ଶେଷେ
ଦେବୀ କି ମାନବୀ ତୁମ୍ଭେ ?
କେଉଁ ଦେବୀ ? କି ମାନବେ ଅବତୀର୍ଣ୍ଣ ତବ ?
ରୂପ, ଶୀଳ, ଆଚାର ସୁ,
ନ କର ଛଳନା ଆଉ,
କହ ମୋତେ ପେଡ଼ଣ ସତ୍ୟ ।

ରତ୍ନ—ମହାରାଜ ! କ୍ଷମାକର
ଏ ଅଧୀନା ରତ୍ନମାଳୀ,
ନରସିଂହ ରାଜାଙ୍କ ଦୁହିତା,
ଅଭାଗିନୀ ଜନମରୁ ମାତୃ ପିତୃ ହୀନା,
ଅଧୁନା ଶାଛମ୍ଭ ପିତା,
ପ୍ରମିଳା, ଚପଳା ତବ ଅଗ୍ରେ ଦୁଇ କନ୍ୟା,
ଆଜିଠାରୁ ତିନ କନ୍ୟା ହେଲେ ସମୁଜ୍ଜଳ ।
ଦେଖି ଶୁଣି ଏ ସମସ୍ତ ନ ହେବେ ଚକିତ,
ଏ ପରେ ମୁଁ ଜଣାଇବି ଜୀବନୀ ମୋହର ;
ଅଧୁନା କର୍ତ୍ତବ୍ୟ ଯାହା ପୂର୍ଣ୍ଣ ହେଉ ଆଗେ ;
ପଣ ଅନ୍ନ ଏକ ବଧେ
କନ୍ୟା ଏକ ପୌରଭୂମି ରାଜ୍ୟରୁ ଅର୍ଦ୍ଧାଂଶ
ପୁରସ୍କାର ରୂପେ ସମ୍ଭୁ କରନ୍ତେ ପ୍ରଦାନ,
ଯେବେ ସମ୍ଭୁ କନ୍ୟା ସହ ରାଜ୍ୟ ଅର୍ଦ୍ଧଭାଗ
କରନ୍ତୁ ପ୍ରଦାନ ତାଙ୍କୁ ( ସୁଦାମଙ୍କ ନିର୍ଦ୍ଦେଶ )
ଦୁଇ ଭଗ୍ନୀ ଏକ ସଙ୍ଗ ଏବେ ବରିବୁଁ ।

ସୁବଳ—ମହାରାଜ ଏହୁ ସମ ଚମତ୍କାର
ଭଲି ମୋ ସୁଦାମ ଏହି !

ଗୀତ—( ମୁଖାରୀ ଛନ୍ଦ )

ଅହୋ କଷ୍ଟ ଅପରାଧ କଲ ମୋ ମାତୃଙ୍କ

ଡାକିଲାସେ ଭଲ ଏ ଯନ୍ତ୍ରଣା ! ( ମୂର୍ଚ୍ଛା ଗମନ )

ଏ ଜଗତ ଦୁର୍ଭାଗ୍ୟ ମୋହର ସରି,

ଧିକ ମୋତେ, ଧିକ ମୋ ଜୀବନେ,

ନିଜ ଦୋଷେ ହାରିଲୁଁ କହ ମୁଁ ଆପଣେ

ଶୋକାକୁଳ ଦେଶ ଯାଇ,

ପାଏ ମିତ୍ର ଅନେକ

ବୁଲୁଛନ୍ତି ଦେଶ ଦେଶ,

ଖୋଜୁଛନ୍ତି ଅଦ୍ୟାପି ତୁମ୍ଭଙ୍କୁ ।

( ଶ୍ରୀଧର କୋଷର ଗୁରୁଦେବ ପ୍ରତି )

କ୍ଷମାକର ସର୍ବେ ମୋତେ

ଅଜ୍ଞାନ, ନିର୍ବୋଧ, ମୂର୍ଖ, ପାପିଷ୍ଠ ମୁଁ,

ଶରଣାପନ୍ନେ ନିତାନ୍ତ ଅଯୋଗ୍ୟ,

କୃପାକର ଏ ଅଧମେ କରନ୍ତୁ କୃତାର୍ଥ ସର୍ବେ

ପଦରେଣୁ ଦାନେ ଆଜି ଦରିଦ୍ର କୁଟୀରେ

( ଗୋବର୍ଦ୍ଧନ ପ୍ରତି )

ମନ୍ତ୍ରୀ ଗୋବର୍ଦ୍ଧନ ( ମୂର୍ଚ୍ଛା ମୋଚନ )

ମନ୍ତ୍ରୀ ଗୋବର୍ଦ୍ଧନ ତୁମ୍ଭେ ନେଇ ଅମ୍ଭ ସୈନ୍ୟ,

ଏବେ ଗଜ ଦଳବଳ ସମସ୍ତ ଅମ୍ଭର

ରହିବେ ଅଧୀନେ ତବ,

ଘାଲକୁଣ୍ଡ ଆକ୍ରମଣେ

ଅବିଳମ୍ବେ ଯିବେ ସୈନ୍ୟଗଣ,

ପ୍ରବଳନ୍ତା: ଏବ ଶିବ

ରତ୍ନମାଳ ପିତୃହନ୍ତା ପାପିଷ୍ଠ ଘାତରେ

କଳାଣି ମସ୍ତିଷ୍କ ଆଜ ଦେଖାଇବେ ଏଥ,
ସନ୍ନବତ୍ତି ହେଉ ତବ
ଶାଲକୁଣ୍ଡ ପ୍ରବେଶାର ମିଳିବ ତୁମ୍ଭଙ୍କୁ,
ମିତ୍ର ସୈନ୍ୟ ହେବ ସେ ଅମୃତ,
ସୌରଭୂମି ହେବ ତୁର ଅଂଶ
ସୁବଳପାଟଣା ଆଉ ସୁଦାମନଗର,
ରତ୍ନପୁର କଥା ପଛେ
ରତ୍ନମାଳୀ କରବ ତୁମ୍ଭସ୍ତୁ ।

( ଦେବଦୁର୍ଗ ବାସବାସୀମାନଙ୍କ ପ୍ରତି )

ତୁମ୍ଭେ ସର୍ବେ—

ରତ୍ନ—( ସୁଦାମଙ୍କୁ ଲକ୍ଷ କରି )
ସେ ଯୁବକ ମୁକ୍ତି ତାଙ୍କୁ କରନ୍ତେ ପ୍ରଦାନ
ସ୍ୱଅମରୁ ଖସି ଏ ଦୁର୍ଗଣ୍ଡି ।

ସୁଦ—ଆଜ୍ଞା ସର୍ବେ ମୁକ୍ତିଇଚ୍ଛା କର ତାଙ୍କଠାରେ

( ସୁଦାମଙ୍କ ପ୍ରତି )

ଦଅ ବସ ମୁକ୍ତି ଅଜ୍ଞା ଦଅ ସେମାନଙ୍କ

( ଦେବଦୁର୍ଗବାସବାସୀମାନଙ୍କ ପ୍ରତି )

ତାଙ୍କର ଅଜ୍ଞାରେ ଆଜି
ତଲ ସର୍ବେ ମୁକ୍ତିଲାଭ ।
ରୂପାକର ଦଳା ତୁଲ ଦଦତ୍ତ ଭୂଷୀରେ
ସର୍ବସ୍ତ୍ରେ କରବେ ଏସ୍ଥ ଅଭଧ୍ୟା ସ୍ୱୀକାର,
ତଦନ୍ତେ ହସଲ ଥିଲେ ଯେନ୍ତୁ ଯେ ସମ୍ଭବ
ସେଲ ସୁଖେ ଫେରିଯିବେ ନିଜ ନିଜ ଗୃହେ ।

୧ମ ବାସ୍ବବାସୀ—ମହାରାଜ ! ମାତା ଧନ୍ୟ ରତ୍ନମାଳୀ ;
ନ ଭୁଲିବୁ ତାଙ୍କ ସ୍ନେହ ଆଉ ଏ ଜୀବନ ।

୨ୟ ଗ୍ରାମବାସୀ—ଏଥେ ଅମ୍ଭ ନାହିଁ ପ୍ରୟୋଜନ ।

୩ୟ ଗ୍ରାମବାସୀ—ଦେହ ଅର୍ଥ ଜନ ବନ୍ଧୁ
ଜନ୍ମଯାଉ ରହିମର ରାଜ୍ୟ ବୃଦ୍ଧି,
ପିତା ମାତାଙ୍କୁ ପରିଜନ ସହ
ସର୍ବେ ଅମ୍ଭେ ଲଭୁଁ ଯେ ଭାଗ୍ୟ ଅଛି ।

ରାଜ—ସର୍ବେ ମହାଜନ ଏଣୁ ସମସ୍ତେ ଉଦାର,
ଏକାକ ମୁଁ ଅଜ୍ଞାନ ନିର୍ବୋଧ,
ଜଗତରେ ସ୍ଥୂଳବୁଦ୍ଧି ମନୁଷ୍ୟ ଅଧମ ;
ଚଳନ୍ତୁ ସମସ୍ତେ ତେବେ ଦରିଦ୍ର କୁଟୀରେ,
ଯହିଁ ବସେ ରହିମାଲି !
ଯେ ଯାହାର ଅଳ୍ପ ବାଞ୍ଛା
ପୂର୍ଣ୍ଣ ହେଲା ସବୁ ଅଜି,
(ସୁବଳ ପତି) ହେଜ୍ ଭଲ ମିଳିଲେ ସୁଫଳ,
ପିତାମାତା ପୂଜ୍ୟ ପୂଜ୍ୟତମ
ମିଳିଛନ୍ତି ଅବି ସୌଭାଗ୍ୟକୁ.
ଏ ସମସ୍ତ ଜନ୍ମ ବର୍ଗ ଛନ୍ତି ଉପସ୍ଥିତ,
ଅମ୍ଭ ବାଞ୍ଛା ପୂର୍ଣ୍ଣ ଏବେ ଜଗ ସର୍ବେ ମିଳି ;
ସ୍ଥିର ହର ଉଷ୍ଣ ଲଗ୍ନ
ସୁବଳ ସୁତାମେ ଜନ୍ମା ଜହରା ପ୍ରଦାନ

(ସମସ୍ତଙ୍କର ପ୍ରସ୍ଥାନ ।)

## ଚତୁର୍ଥ ଦୃଶ୍ୟ ।—ମାଳୀବାଡ଼ି ଗ୍ରାମ ।

(ମାଲ୍ୟାଣୀମାନଙ୍କର ପୁଷ୍ପଗୁଚ୍ଛ ସହ ପ୍ରବେଶ ।)

ଗୀତ ।

ଚାଲ ଚାଲ ଚାଲ ସଖି ଯିବା ବହନ
ତୁମ୍ଭମାନେ ସତେବଶ ଜେମା ହେବେ ପଧାନ ।
ଶୁଭକାର୍ଯ୍ୟ ଅରମ୍ଭରେ ଯେତେ ଯେ ଲୋଡ଼ା ଅଗରେ
ଚନ୍ଦ୍ରରେ ପ୍ରଧାନ ସଖି ପୁଷ୍ପ ଚନ୍ଦନ ।
କୁସୁମ କଳା ବିବାହ କାହିଁ ଗୋ ଦେଖଛି କହ
ହେଲା ତୁମ୍ଭେମାନେ ଖିଅଲ ପ୍ରେମ ବନ୍ଧନ ।
ଦଅଣା ହେବେ ଗଲ ଚମ୍ପା ମଲ୍ଲି ଯୁଇ ଯାଇ
ଗୁନ୍ଥିଛୁଁ ବକୁଳ ମାଳ କରି ଯତନ ।
ବର କନ୍ୟାଙ୍କ ଯଜି ଏ ପୁଷ୍ପ ଭୂଷଣେ ସାଜି
ମିଶାଇବେ ପରସ୍ପର ଗୀତେ ଜୀବନ ।
ଦେଖି ଦମ୍ପତି ତୋଷ କୁସୁମ ଧନୁ ହରଷ
ପଞ୍ଚ ଶରୀ ପ୍ରୀତିରସେ ହେବେ ମଗନ ।

୧ମ ମାଳୀଣୀ—ଚାଲ ସଖି ! ଲଗନ ବେଳ ହୋଇ ଆଇଲାଣି, ଜେମାମାନେ ବେଶ ହେବେ, ବରମାନେ ବେଶ ପିନ୍ଧିବେ ଡେରି ହେଉଛି ଯଲ୍‌ଦି ଚାଲ ।

୨ୟ ମା—ହଁ ଚାଲ । ଫୁଲ ଲାଗି ସମସ୍ତେ ବସିଥିବେ । ଫୁଲ ନ ହେଲେ ତ କୌଣସି କାମ ହେବ ନାହିଁ ।

୩ୟ ମା—କେତେ ଯତନରେ ଫୁଲ ଗୁନ୍ଥିଛେ । ଫୁଲ ପିନ୍ଧିଲେ ଜେମାମାନଙ୍କ ମନ କୁସୁମ ଚେଙ୍ଗା ଫୁଲି ଉଠିବ ।

୨ୟ ମା—ଏତେକାଳକେ ଆଜି ରାଜପୁରରେ ବିବାହ ଯୋଗ ପଡ଼ୁଛି । ରଜା ନଅରଠାରୁ ନଗର ଯାକ ସମସ୍ତେ ଆନନ୍ଦରେ ନାଚୁଛନ୍ତି ।

ଗୀତ ।

ଦେଖ ଲୋ ସୁନ୍ଦରୀ
ଆଜି ଏ ନଗରୀ
କି ସୁନ୍ଦର ସାଜେ ସାଜିଛି ।
କେତେ ଯୁଗ ପରେ
ଆଜି ଏ ରାଜ୍ୟରେ
ବହୁ ଏ ସୁଯୋଗ ଆସିଛି ।
ରମ୍ଭା ତରୁ ରାଜି
ଦୁଆରେ ଦୁଆରେ
କିବା ରମଣୀୟ ଶୋଭୁଛି ।
ଚୂତ ଶାଖା ସହ
ପୂର୍ଣ୍ଣ କୁମ୍ଭମାନ
ଘରେ ଘରେ ଦେଖ ବସିଛି ।
ସ୍ଥାନେ ସ୍ଥାନେ ଉଡ଼େ
ନାନା ବର୍ଣ୍ଣ କେତୁ
ଚୂତ ପତ୍ରମାଳ ଲମ୍ବିଛି ।
ଶଙ୍ଖ ହୁଳା ହୁଳି
ନିନାଦରେ ମନ୍ତ୍ରୀ
ପୁଲକେ ପୁଲକି ଉଠୁଛି ।
ଚାଲ ଚାଲ ବେଗେ
ଯିବା ଲୋ ସଜନି
ଦେଖ ତ ଉତ୍ସବ ହେଉଛି ।

(ସମସ୍ତଙ୍କର ପ୍ରସ୍ଥାନ)

———

## ପଞ୍ଚମ ଦୃଶ୍ୟ—ରାଜ ଅନ୍ତଃପୁର ।

( ଏକ ଆସନେ ସୁଦାମ ରତ୍ନମାଳୀ ଓ ଚଞ୍ଚଳା ଉପବିଷ୍ଟ ଅନ୍ୟାସନେ ସୁବଳ ଓ ପ୍ରମିଳା ଉପବିଷ୍ଟ । ପୁରରମଣୀମାନଙ୍କର ଅର୍ଘଥାଳ ହସ୍ତେ ପ୍ରବେଶ ଓ ବନ୍ଦାପନା )

ଗୀତ ।

ଆସ ଲୋ ଆସ ଲୋ   ଆସ ସଖୀଗଣ
ସପ୍ତଦୀପାବଳି ଘେନ
ବର କନ୍ୟାଙ୍କର   ମଙ୍ଗଳ ଆଳତି
କରିବା ମିଳି ସଜନ ।
ଚନ୍ଦନ ସିନ୍ଦୂର   ଲଲାଟେ ତାଙ୍କର
ଲେପିବା ଆସ ଭଗିନି
କଦମ୍ବ ଅକ୍ଷତ   ଦୁର୍ବାଦଳ ଫିଙ୍ଗି
କର ହୁଳାହୁଳି ଧ୍ୱନି ।

(ହୁଳ ଧ୍ୱନି ଓ ବନ୍ଦାପନା)

ଗୀତ ।

ହର ଚରଣେ କର ଜଣାଣ
କୃପା କରନ୍ତୁ ଶ୍ରୀ ଭଗବାନ ।
ସର୍ବ ସୁଖମୟ
ସର୍ବ ଶାନ୍ତିମୟ
ସର୍ବ ମଙ୍ଗଳ ବିଧାତ,

କରନ୍ତୁ ମଙ୍ଗଳ
ଜଗ କଲ୍ୟାଣକର
ଦଉ ଯଶଶ୍ରୀ ପ୍ରଦାନ ।
ସର୍ବ ଶୁଭ ଭାଗୀ
କର ସମସ୍ତଙ୍କୁ
ନାଶ ରୋଗ ଶୋକମାନ
ହେଉନ୍ତୁ ଚିରାୟୁ ।
ବନ୍ଦେ ନାରାୟଣ
(ସବୁ) ଭିକ୍ଷା ଶ୍ରୀପଦ କଲ୍ୟାଣ ।






PRINTED BY B. S. DAS. MUKUR PRESS. CUTTACK.